ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା :

# ବିଦ୍ରୋହୀ

[ ରୁଷୀୟ ଲେଖକ ଆଲେକ୍‌ଜାଣ୍ଡର ପୁସ୍କିନ୍‌ଙ୍କ ଉପନ୍ୟାସ
**Dubrovosky**ର ଓଡ଼ିଆ ରୂପାନ୍ତର ]

ଅନୁବାଦକ :
ଶ୍ରୀମତୀ କାଞ୍ଚନବାଳା ମହାନ୍ତି
ଏମ୍.ଏ.,ବି.ଇଡ୍.,

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜକୁମାର୍ ମହାପାତ୍ର
ଗ୍ରନ୍ଥମନ୍ଦିର, କଟକ-୨

ମୁଦ୍ରକ : ପସାର ପ୍ରେସ୍, କଟକ

ପ୍ରଥମ ମୁଦ୍ରଣ : ୧୯୯୭

ମୂଲ୍ୟ : ଟ ୧୫.୦୦

# ବିଦ୍ରୋହୀ

## ପ୍ରଥମ ଅଧ୍ୟାୟ

ଅନେକ ବର୍ଷ ପୂର୍ବେ ରୁଷିଆରେ କିରିଲା ପେଟ୍ରୋଭିଚ ଟ୍ରୋଏକୁରୋଭ ନାମରେ ଜଣେ ଜମିଦାର ଥିଲେ । ତାଙ୍କର ସାଇପଡ଼ିଶା ଲୋକମାନେ ତାଙ୍କ ସହିତ ବେଶ୍ ଥଟ୍ଟା, ପରିହାସ କରୁଥିଲେ । ମଧ୍ୟାହ୍ନ ସମୟରେ ସେ ଅନେକ ଲୋକଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କରୁଥିଲେ । କେହି ଜଣେ ହେଲେ ତାଙ୍କ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରୁନଥିଲେ । କାରଣ ତାଙ୍କ ଚରିତ୍ରର ସମସ୍ତ ଦୁର୍ଗୁଣଗୁଡ଼ିକ ଶିକ୍ଷାଦ୍ୱାରା ବି ସଂଶୋଧିତ ହୋଇପାରିନଥିଲା । ତାଙ୍କ ଗାଆଁ ପାକ୍ରୋଭସ୍କିର ଲୋକମାନେ ତାଙ୍କୁ ବାଧ୍ୟହୋଇ ସମ୍ମାନ ଦେଉଥିଲେ । ସେ ଖାଦ୍ୟପେୟରେ ପ୍ରଚୁର ଅର୍ଥ ଖର୍ଚ୍ଚ କରି ଗାଁ ଲୋକଙ୍କୁ ସନ୍ତୁଷ୍ଟ କରି ରଖିଥିଲେ ଓ ସେମାନେ ତାଙ୍କୁ ସମସ୍ତ ଅନିଚ୍ଛା ସତ୍ତ୍ୱେ ପ୍ରଶଂସାରେ ପୋତିପକାଉଥିଲେ । ଫଳରେ ଜମିଦାର ତାଙ୍କର ବଚ୍ଚର ବୃଦ୍ଧି ହବାରୁ ଦୁର୍ଦ୍ଦାନ୍ତ ହୋଇ ଉଠିଥିଲେ । ତାଙ୍କ ଘରେ ଷୋହଳ ଜଣ ସ୍ତ୍ରୀଲୋକ କାମ କରିବା ପାଇଁ ରହିଥିଲେ । ସେମାନେ ସ୍ପିନ ତିଆରି କରିବା ଓ ବଗିଚାରେ କାମ କରିବାରେ ସର୍ବଦା ବ୍ୟସ୍ତଥିଲେ ।

ଡୁବ୍ରୋଭସ୍କି ତାଙ୍କର ଅନେକ ଦିନର ବନ୍ଧୁ ଥିଲେ ପୁଣି ସେ ବି ଟ୍ରୋଏକୁରୋଭଙ୍କର ସାମୟିକ ଥଟ୍ଟାର ପାତ୍ର ହେଉଥିଲେ । ସେ ଜଣେ ଅବସରପ୍ରାପ୍ତ ଗାର୍ଡ଼ ଅଫିସର୍ ଥିଲେ । ତାଙ୍କର ସତୁରି ଏକର ଜମି ଥିଲା । ସେ ତାଙ୍କର ପଡ଼ୋଶୀ ଓ ପୁରାତନ ବନ୍ଧୁ ଥିଲେ । ଡୁବ୍ରୋଭସ୍କି ଥିଲେ କ୍ରୋଧୀ ଓ ଏକଜିଦିଆ ମଣିଷ । ଏକଥା ଟ୍ରୋଏକୁରୋଭଙ୍କୁ ଭଲରୂପେ ଜଣାଥିଲା । ତଥାପି ସେ ତାଙ୍କର ଅନ୍ତରଙ୍ଗ ବନ୍ଧୁଙ୍କୁ ଅନେକ ସମୟରେ ଥଟ୍ଟା କରୁଥିଲେ ।

ପରିସ୍ଥିତି ଯୋଗୁ ଅନେକ ଦିନ ଧରି ଦୁହେଁ ପୃଥକ୍ ପୃଥକ୍ ରହୁଥିଲେ । ଡୁବ୍ରୋଭସ୍କି ପୈତୃକ ସମ୍ପତ୍ତିର ରକ୍ଷଣାବେକ୍ଷଣ ପାଇଁ ଗାଆଁରେ ରହୁଥିଲେ । କିରିଲ୍ ପେଟ୍ରୋଭିଚ୍ ଏକଥା ଜାଣିବା ପରେ ତାଙ୍କୁ ଅନେକ ବୁଝାଇଲେ ଏବଂ ସାହାଯ୍ୟ କରିବାକୁ ଆଗେଇ ଯାଇଥିଲେ । କିନ୍ତୁ ଡୁବ୍ରୋଭସ୍କି ଅସୁବିଧା ବରଣକରି ସ୍ୱାଧୀନ ଭାବେ ରହିବାକୁ ଉଚିତ ମନେ କରୁଥିଲେ । ବହୁବର୍ଷ ପରେ କିରିଲ୍ ପେଟ୍ରୋଭିଚ୍ ମୁଖ୍ୟ ସେନାପତି ପଦରୁ ଅବସର ନେବା ପରେ ତାଙ୍କ ରାଜ୍ୟକୁ ଫେରିଆସିଥିଲେ ଏବଂ ବନ୍ଧୁକୁ ସେ ଦୁଃସମୟରେ ରକ୍ଷା କରିବା ପାଇଁ ଆଗଭର ହୋଇଥିଲେ । ତାହା ପରଠାରୁ ପ୍ରତ୍ୟେକ ଦିନ ଉଭୟେ ଉଭୟଙ୍କୁ ସାକ୍ଷାତ କରୁଥିଲେ ଓ ଖୁସିଗପ କରୁଥିଲେ ।

ଦୁହେଁ ସମବୟସର ଓ ଏକ ଢାଞ୍ଚାରେ ଗଢ଼ିଉଠିଥିଲେ । ଉଭୟଙ୍କର ରୁଚି ମଧ୍ୟ ଏକ ପ୍ରକାରର ଥିଲା । ଦୁହେଁ ନିଜନିଜର ରୁଚିସଙ୍ଗତ ବିବାହ କରିଥିଲେ ଓ ପ୍ରଥମ ସନ୍ତାନ ଭୂମିଷ୍ଠ ହେବା ପରେ ଦୁଇବନ୍ଧୁ ସେମାନଙ୍କର ପରମ ଆଦରଣୀୟା ସ୍ତ୍ରୀଙ୍କୁ ହରାଇଥିଲେ । ଡୁବ୍ରୋଭସ୍କିଙ୍କର ଏକମାତ୍ର ପୁତ୍ର ପିଟରସବର୍ଗରେ ଅଧ୍ୟୟନ କରୁଥିବାବେଳେ କିରିଲ୍ ପେଟ୍ରୋଭିଚ୍‌ଙ୍କର ଏକମାତ୍ର କନ୍ୟା ଘରେ ରହି ସମୟ କଟାଉଥିଲା ।

କିରିଲ ପେଟ୍ରୋଭିଚ୍ ଡୁବ୍ରୋଭସ୍କିଙ୍କୁ ସର୍ବଦା କହୁଥିଲେ, "ଡୁବ୍ରୋଭସ୍କି, ତୁମେ ଦେଖ, ତୁମ ଭୋଲୋଡ୍ୟାର ଉତ୍ତମ ଶିକ୍ଷାଲାଭ ପରେ ମୁଁ ମୋର ଝିଅ ମାଶାକୁ ତାକୁ ବିବାହ କରାଇଦେବି ଯଦି ବା ଭୋଲୋଡ୍ୟା ଏକ ଚର୍ଚ୍ଚମୂଷା ପରି ଏକ ଅସହାୟ ଯୁବକ ।"

କିରିଲଙ୍କର ଏହି କଥା ଶୁଣିବା ପରେ ଡୁବ୍ରୋଭସ୍କି ଧୀରେ ଧୀରେ ମୁଣ୍ଡ ହଲାଇ ହଲାଇ କହିଲେ, "ହଁ, ହଁ, ସତକଥା । ମାଶା ପାଇଁ ଭୋଲୋଡ୍ୟା ଅନୁପଯୁକ୍ତ । ଗରିବ ଘରର ପୁଅ ଗରିବ ଘରେ ବିବାହେବା ଉଚିତ । ହଁ, ଆହୁରି ଗୋଟିଏ କଥା ମନେରଖ—ଧନୀଘର ଝିଅର ପରିଚାରକ ହେବା ଅପେକ୍ଷା ଗରିବ ଘର ଝିଅର ମୁରବି ହେବା ଭଲ ।"

ଏହି ଆଲୋଚନା ଚାଲିଥିବା ବେଳେ ଉପସ୍ଥିତ ସମସ୍ତ ଲୋକ ନୀରବ

ଦ୍ରଷ୍ଟା ହୋଇ ବସିଥିଲେ । କାରଣ ଡୁବ୍ରୋଭସ୍କିଙ୍କର ଜିଦ୍‌ଖୋର ପ୍ରକୃତି ବିଷୟରେ ସମସ୍ତେ ଭଲରୂପେ ଜାଣିଥିଲେ ।

ସମୟକ୍ରମେ ଧରିତ୍ରୀପୃଷ୍ଠକୁ ମଣ୍ଡିତ କରି ଶରତ ଋତୁ ଆସିଲା । ଜମିଦାର କିରିଲା ଶିକାର କରିଯିବାକୁ ପ୍ରସ୍ତୁତ ହେଲେ । ଆଗୁଆ ଦଳ ଗନ୍ତବ୍ୟ ସ୍ଥାନକୁ ଖାଦ୍ୟପେୟ ନେଇ ଚାଲିଗଲେ । ପୂର୍ବରୁ ଅଶ୍ୱରକ୍ଷକ ଓ ଶିକାରୀ-ମାନଙ୍କୁ ସକାଳୁ ପ୍ରସ୍ତୁତ ହେବାପାଇଁ ଖବର ଦିଆସରିଥାଏ । ଉପସ୍ଥିତ ଅତିଥିମାନେ ଏହାପରେ କିରିଲାଙ୍କ ସହିତ ତାଙ୍କର କୁକୁର ରହିବା ଘର ଦେଖିବାକୁ ଗଲେ । ସେଠାରେ ଶତାଧିକ କୁକୁର ଜିଭ ଲହଲହ କରି କିରିଲାଙ୍କର ମହାନୁଭବତା ପ୍ରକାଶ କରୁଥିଲେ । କୁକୁରମାନଙ୍କର ଠିକ୍ ଯତ୍ନ ନେବାପାଇଁ ତାଙ୍କର ଡାକ୍ତର ଓ ରକ୍ଷକଙ୍କୁ ସାବଧାନ କରାଇଦେଇ କିରିଲ ନିଜର ବଡ଼ିମା ପ୍ରକାଶ କରାଇଲେ । ଡୁବ୍ରୋଭସ୍କିଙ୍କୁ ଏସବୁ ଯୁଖ ଲାଗୁନଥିଲା—ସେ ତେଣୁ ଚୁପ୍‌ଚାପ୍ ରହିଥିଲେ ।

ତାଙ୍କର ନୀରବତାକୁ ଲକ୍ଷ୍ୟକରି କିରିଲା ପଚାରିଥିଲେ, "ଏପରି ଚୁପ୍‌ଚାପ୍ କାହିଁକି ରହୁଛ ? ମୋ କୁକୁର କ'ଣ ତୁମର ପସନ୍ଦ ହେଉନାହିଁ ?"

"ତୁମ କୁକୁରର ମୂଲ୍ୟ ବହୁତ ହୋଇଯାଇଛି । ହଁ—ତୁମ ଚାକରମାନଙ୍କ ଅପେକ୍ଷା ତୁମ କୁକୁର ଭଲରେ ରହୁଛନ୍ତି ।"

ଏହା ଶୁଣି କୁକୁରରକ୍ଷକଟି ଥଟ୍ଟା କରି କହିଲା—"ହଁ, ଆମେ ସେଥିପାଇଁ ଈଶ୍ୱରଙ୍କୁ ଓ ଆମ ମାଲିକଙ୍କୁ ଧନ୍ୟବାଦ ଜଣାଉ । କେତେକ ଭଦ୍ରଲୋକ ଅଛନ୍ତି ଯେଉଁମାନେ ନିଜର ରାଜ୍ୟ ବଦଳରେ ଏହି ବଢ଼ିଆ କୁକୁରଙ୍କୁ ନେବାକୁ ଆଗ୍ରହ ପ୍ରକାଶ କରିଥାନ୍ତି ଏବଂ ଆହୁରି ଭଲରେ ରଖିବାକୁ ଚାହିଁଥାନ୍ତି ।"

ଏହି ଧରଣର ବ୍ୟଙ୍ଗ ଓ ବକ୍ରୋକ୍ତିରେ କିରିଲା ଓ ତାଙ୍କ ଦଳର ସମସ୍ତେ ଥଟ୍ଟାକରି ହସିଉଠିଲେ । ଗୋଟିଏ ସାମାନ୍ୟ କୁକୁର-ରକ୍ଷକର ଏ ଧରଣର ପରିହାସରେ ଡୁବ୍ରୋଭସ୍କିଙ୍କର ମୁହଁ ଶୁଖିଗଲା ଓ ସେ ମର୍ମାହତ ହେଲେ । ତଥାପି ସେ କିଛି କହିଲେ ନାହିଁ । ନୀରବରେ ସେ ସେହି ସ୍ଥାନ ଛାଡ଼ି ଘରକୁ ଚାଲିଯାଇଥିଲେ । ସେତେବେଳକୁ କିରିଲା ନୂଆ କୁକୁର ଛୁଆ ଦେଖିବାରେ ବ୍ୟସ୍ତ ଥିଲେ ।

ମଧ୍ୟାହ୍ନ ଭୋଜନ ସମୟରେ କଉଣ୍ଟ ଡୁବ୍ରୋଭସ୍କିଙ୍କୁ ଅନେକ ଖୋଜିଲେ ଏବଂ ସେ ଚାଲିଯାଇଛନ୍ତି ଶୁଣି ତାଙ୍କୁ ବାଟରୁ ଫେରାଇ ଆଣିବା ପାଇଁ ଲୋକ ପଠାଇଲେ । ଡୁବ୍ରୋଭସ୍କିଙ୍କୁ ନନେଇ କଉଣ୍ଟ କେବେ ଶିକାର କରିନଥିଲେ, କାରଣ ଡୁବ୍ରୋଭସ୍କି ହିଂସ୍ରଜନ୍ତୁମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖି ତାଙ୍କୁ ଶିକାରରେ ବହୁତ ସାହାଯ୍ୟ କରୁଥିଲେ । ତେଣୁ ସେ ବନ୍ଧୁଗହଣରେ ତାଇନିଂ ଟେବୁଲରେ ଖାଇବାକୁ ବସିଥାଇ ସୁଦ୍ଧା ତାଙ୍କୁ ଡକାଇପଠାଇଥିଲେ । କିନ୍ତୁ ଡୁବ୍ରୋଭସ୍କି ଡାକରାକୁ ପ୍ରତ୍ୟାଖ୍ୟାନ କରି ଚାଲିଯାଇଥିଲେ । କଉଣ୍ଟ ଦ୍ୱିତୀୟ ଥର ପାଇଁ ଚାକରକୁ ତାଙ୍କ ଘରକୁ ପଠାଇଥିଲେ ଏବଂ କହିଥିଲେ ଯେ ଡୁବ୍ରୋଭସ୍କି ନଫେରିଲେ ପରିଣତି ବଡ଼ ଖରାପ ହେବ । ସେ ଚାକରକୁ ପଠାଇଦେଲେ ଓ ବନ୍ଧୁମାନଙ୍କୁ ବିଦାୟ ଦେଇ ସାରିଲା ପରେ ନିଜେ ନଖାଇ ମଦ ଟିକେ ପିଇ ଶୋଇପଡ଼ିଲେ ।

ତା' ପରଦିନ ପ୍ରଭାତରୁ ଶଯ୍ୟାତ୍ୟାଗ କରିବା ମାତ୍ରକେ କଉଣ୍ଟ ପେଟ୍ରୋଭିଚ୍ ତାଙ୍କ ପରିଚାରକକୁ ପଚାରିଲେ, 'ଡୁବ୍ରୋଭସ୍କି କ'ଣ ଏଠାରେ ଅଛନ୍ତି ?' ଲୋକଟି ସଙ୍ଗେ ସଙ୍ଗେ କୁଞ୍ଚୁଡ଼ା ଚୂଳ ପରି ଭଙ୍ଗା ହୋଇଥିବା ଚିଠିଖଣ୍ଡିକ ତାଙ୍କ ହାତକୁ ବଢ଼ାଇଦେଲା । କଉଣ୍ଟ ପେଟ୍ରୋଭିଚ୍ ସେ ଚିଠିଟିକୁ ବଡ଼ପାଟିରେ ପଢ଼ିବାକୁ ଆଦେଶ ଦେଲେ । ଚିଠି ପଢ଼ାଗଲା—

"ସମ୍ମାନନୀୟ ସାର୍,

ମୁଁ ପୋକ୍ରୋଭସ୍କି ଯିବାକୁ ଅନିଚ୍ଛୁକ ନୁହେଁ । କିନ୍ତୁ ତା' ପୂର୍ବରୁ ତୁମର କୁକୁରରକ୍ଷକ ମାରମୋଷ୍କା ତା' ଭୁଲ ପାଇଁ କ୍ଷମାପ୍ରାର୍ଥନା କରିବାକୁ ହେବ ଓ ତୁମର କୁକୁରରକ୍ଷକମାନେ ମୋତେ ଦେଖି କେବେ ଏପରି ପରିହାସ କରିବେ ନାହିଁ ବୋଲି କଥାଦେବେ । ମୁଁ ତ ତୁମର ଭାଟ ନୁହେଁ ଯେ ତୁମର ସର୍ବଦା ସ୍ତବଗାନ କରିବି । ମୁଁ ଏବେ ବି ତୁମର ବିଶ୍ୱସ୍ତ ହୋଇ ଅଛି ।"

ଇତି ତୁମର
ଆଣ୍ଡ୍ରି ଡୁବ୍ରୋଭସ୍କି

ଭଦ୍ରତା ଦୃଷ୍ଟିରୁ ବିଚାରକଲେ ଚିଠିର ଶୈଳୀ ସେତେ ଖରାପ ନଥିଲା; କିନ୍ତୁ ତାହାର ଅର୍ଥ କିରିଲା ପେଟ୍ରୋଭିଚ୍‌ଙ୍କ ନିକଟରେ ଅନ୍ୟରୂପ ନେଲା। ବଜ୍ରାଘାତ ହେଲାପରି କିରିଲା ପେଟ୍ରୋଭିଚ୍ ବିଛଣାରୁ ତଳକୁ ଡେଇଁପଡ଼ିଲେ ଓ ଚଟାଣରେ ଖାଲି ପାଦରେ ଠିଆହୋଇ କହିଲେ, "କ'ଣ ମୁଁ ମୋ ଲୋକକୁ କ୍ଷମା ମାଗିବା ପାଇଁ ତା ନିକଟକୁ ପଠାଇବି ? ସେ ମୋତେ କ'ଣ ବୋଲି ଭାବିଲା କି ? କାହା ସହିତ ସେ ଏଭଳି ବ୍ୟବହାର କରୁଛି ? ଜାଣିଲା ପେଟ୍ରୋଭିଚ୍ ଟ୍ରୋଏକୁରୋଭ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାର ଫଳାଫଳ କ'ଣ ହୁଏ ମୁଁ ତାକୁ ଦେଖାଇଦେବି।"

କିରିଲା ପୋଷାକ ପିନ୍ଧିଲେ। ସବୁଥର ପରି ସେଦିନ ମଧ୍ୟ ସେ ଶିକାର ଯାତ୍ରା ଆଡ଼ମ୍ବର ସହକାରେ ପାଳନ କଲେ। ହେଲେ କ'ଣ ହେଲା— ଗୋଟିଏ ହେଲେ ଶିକାର ମିଳିଲା ନାହିଁ। ସାରା ଦିନ ଭିତରେ ସେମାନେ କେବଳ ଗୋଟିଏ ଠେକୁଆ ଦେଖିଥିଲେ ଏବଂ ତାକୁ ବି ମାରିପାରି ନଥିଲେ। ସେ ସେଦିନ ତମ୍ବୁରେ ରନ୍ଧାହୋଇଥିବା କୌଣସି ଖାଦ୍ୟ ଖାଇପାରିଲେ ନାହିଁ। ତାଙ୍କୁ କିଛି ଭଲଲାଗିନଥିଲା। ରାଗରେ ସେ ଖାଇବା ପାଖରୁ ଉଠିଯାଇଥିଲେ, ପୂଜାରୀକୁ ମାରିଥିଲେ ଓ ଅତିଥିମାନଙ୍କୁ ଅନେକ ଗାଳିଦେଇଥିଲେ। ତା'ପରେ ଡୁବ୍ରୋଭସ୍କିଙ୍କ ଫସଲ କିଆରି ଭିତରଦେଇ ତାଙ୍କ ସାଙ୍ଗମାନଙ୍କୁ ଧରି ପ୍ରତ୍ୟାବର୍ତ୍ତନ କରିଥିଲେ।

× × ×

ଅନେକ ଦିନ ଚାଲିଗଲା। କିନ୍ତୁ ଡୁବ୍ରୋଭସ୍କି ବନ୍ଧୁ କିରିଲାଙ୍କ ବ୍ୟବହାରରେ କ୍ଷୁବ୍‌ଧହୋଇ ତାଙ୍କ ନିକଟକୁ ଯାଉନଥିଲେ। କିରିଲା ପେଟ୍ରୋଭିଚ୍ ସର୍ବଦା ଡୁବ୍ରୋଭସ୍କିଙ୍କର ସାମାନ୍ୟ ତ୍ରୁଟିକୁ ଲୋକଙ୍କ ଆଗରେ ଅତିରଞ୍ଜିତ କରି କହିବାକୁ ଲାଗିଲେ। ଏହିଭଳି ବିଷାକ୍ତ ପରିବେଶ ମଧ୍ୟରେ ହଠାତ୍ ଏକ ଘଟଣା ଘଟିଲା, ଯେଉଁଥିରେ ବନ୍ଧୁତ୍ୱର ଶେଷଆଶା ଟିକକ ସବୁଦିନ ପାଇଁ ମଉଳିଗଲା।

ଡୁବ୍ରୋଭସ୍କି ତାଙ୍କ ଅଧିକୃତ ଗ୍ରେଟ ଅଞ୍ଚଳଟିର ସୀମା ନିର୍ଦ୍ଧାରଣ କରୁଥିଲେ। ସେ ଭୂର୍ଜବୃକ୍ଷ ନିକଟରେ ପହଞ୍ଚିଲା ବେଳକୁ ଜଙ୍ଗଲରେ ଗଛକଟାର ଶବ୍ଦ ଶୁଣିବାକୁ ପାଇଲେ। ତା ପରେ ପରେ କଟା ଗଛ ଟଳି

ପଢ଼ିବାର ଶବ୍ଦ ମଧ୍ୟ ତାଙ୍କ କାନକୁ ଥରିଇଦେଲା । ଘଟଣାସ୍ଥଳକୁ ଘୋଡ଼ା ଗାଡ଼ି ଶୀଘ୍ର ନେବାପାଇଁ ସେ ଗାଡ଼ିଚାଳକକୁ ନିର୍ଦ୍ଦେଶ ଦେଲେ । ଘଟଣା ସ୍ଥଳରେ ପହଞ୍ଚି ସେ ପୋକ୍ରୋଭସ୍କିର କୃଷକମାନେ କାଠଗଡ଼ ନେଇ ଯାଉଥିବାର ଦେଖିଲେ । ଡୁବ୍ରୋଭସ୍କି ସେଠାରେ ପହଞ୍ଚିବା ପରେ ସେ ଲୋକମାନେ ଲୁଚି ପଳାଇଗଲେ । ତଥାପି ସେମାନଙ୍କ ଭିତରୁ ଦୁଇଜଣଙ୍କୁ ଡୁବ୍ରୋଭସ୍କି ଓ ତାଙ୍କ ଗାଡ଼ିଚାଳକ ମାଡ଼ିବସିଲେ । ସେମାନଙ୍କୁ ଧରିନେଇ ତାଙ୍କ ଘର ଆଗରେ ଥିବା ଗଛରେ ସେ ଦୁହିଁଙ୍କୁ ଟାଣିକରି ବାନ୍ଧିଦେଲେ । ସେ ଶତ୍ରୁପକ୍ଷର ତିନୋଟି ଘୋଡ଼ା ମଧ୍ୟ ପାଇଲେ ।

ଏ ଘଟଣା ପରେ ଡୁବ୍ରୋଭସ୍କି ଖୁବ୍ ରାଗିଗଲେ । ସେ ଭାବିଲେ କିରିଲା ସହିତ ବନ୍ଧୁତା ଥିଲାବେଳେ ଏମାନେ ତ ଏପରି କରିନଥିଲେ । କିନ୍ତୁ ବର୍ତ୍ତମାନର ତିକ୍ତ ସମ୍ପର୍କ ଯୋଗୁ ଏଇ ପାଜିଗୁଡ଼ାକ ଅନେକ ବାଟ ଆଗେଇ ଗଲେଣି । ଏମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ହେବ । ତେଣୁ ସେ ବନ୍ଦୀ ଦୁହିଁଙ୍କୁ ନିର୍ମମ ପ୍ରହାର କରିବା ସଙ୍ଗେ ସଙ୍ଗେ ଘୋଡ଼ାଙ୍କୁ ନିଜ କାର୍ଯ୍ୟରେ ଲଗାଇଦେଲେ ।

ସେହି ଦିନ ହିଁ ଏ ଘଟଣା କିରିଲାଙ୍କ କାନକୁ ଗଲା ଏବଂ ସେ ପ୍ରଚଣ୍ଡ କ୍ରୋଧରେ ଡୁବ୍ରୋଭସ୍କିଙ୍କର ଅଞ୍ଚଳ ଆକ୍ରମଣ କରିବାପାଇଁ ସୈନ୍ୟ-ସାମନ୍ତ ନେଇ ତାଙ୍କ ଅଞ୍ଚଳରେ ପହଞ୍ଚିଲେ । ଠିକ୍ ସେତିକିବେଳେ ମିଲିଟାରି ପୋଷାକ ପରିହିତ ଜଣେ ବ୍ୟକ୍ତି ଘୋଡ଼ାଗାଡ଼ିରୁ ଓହ୍ଲାଇ ଘର ଭିତରକୁ ପ୍ରବେଶକଲେ । କିରିଲା ଦୂରରୁ ଏହା ଦେଖିପାରି ଫେରି-ଆସିଲେ ଓ ସଙ୍ଗେ ସଙ୍ଗେ ସେ ମାଜିଷ୍ଟ୍ରେଟଙ୍କୁ ଡକାଇପଠାଇଲେ ।

ଖୁବ୍ ଶୀଘ୍ର ମାଜିଷ୍ଟ୍ରେଟ୍ ଆସି ପହଞ୍ଚିଗଲେ । ତାଙ୍କୁ ଦେଖି କିରିଲା ବହୁତ ଖୁସି ହୋଇ ଭୋଡ଼କା ପିଇବାକୁ ଯାଚିଲେ । କିନ୍ତୁ ସେ ଭୋଡ଼କା ନ ପିଇ ତାଙ୍କର ଆଦର ଅଭ୍ୟର୍ଥନାରେ ଖୁସିହୋଇ ତାଙ୍କ ନିକଟରେ ବସିଲେ । ପ୍ରଚଣ୍ଡ କ୍ରୋଧରେ ଅନ୍ଧ ହୋଇ ପଡ଼ିଥିବା କିରିଲା ବନ୍ଧୁ ଡୁବ୍ରୋଭସ୍କିଙ୍କ ବିରୋଧରେ ମାଜିଷ୍ଟ୍ରେଟଙ୍କୁ କହିଲେ ।

—"ମୋର ଜଣେ ପଡ଼ୋଶୀ ଅଛି । ତା'ର ଛୋଟ ଜମିଦାରୀଟିଏ ଅଛି ।

ମୁଁ ତା'ର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରିଦେବାକୁ ଚାହୁଁଛୁ—ଏଥିରେ ତୁମର ମତ କ'ଣ ?''

ମାଜିଷ୍ଟ୍ରେଟ କହିଲେ—ହଁ ଆଜ୍ଞା, ଯଦି ସେଭଳି କିଛି ଦଲିଲ ଥାଏ···

—''ନା, ସେପରି କିଛି ନାହିଁ, କିନ୍ତୁ କ'ଣ କରିଯାଇପାରିବ ? ଆଇନର ପନ୍ଥାରେ ତା'ର କେହି କିଛି କରିପାରିବ ନାହିଁ । ତେବେ ତା'ର ସମସ୍ତ ସମ୍ପତ୍ତି ଆମର ହେଲ । ଏହି ସମ୍ପତ୍ତି ସ୍ପିତ୍ସିନଙ୍କଠାରୁ ଆମର କିଣାଯାଇଥିଲ—ପରେ କୌଣସି କାରଣରୁ ଏହା ଡୁବ୍ରୋଭସ୍କିଙ୍କର ବାପାଙ୍କୁ ବିକି କରିଯାଇଥିଲ । ତା ଉପରେ କଣ କିଛି କରିଯାଇ ପାରିବ ?''

—''ନିର୍ଭୁଲ ଭାବରେ ବିକି ଖରିଦ ଦଲିଲ କରିଯାଇଥିଲ କି ନା ଜାଣିବାକୁ ହେବ ।''

—''ମୋ ଭାଇଟା ପରି, ଟିକେ ଚତ୍ରାକରି କିଛି ଗୋଟାଏ ଉପାୟ ବାହାରକର ।''

—''ଯଦି ଆପଣ ଚାହୁଁଛନ୍ତି, ତେବେ କିଛି ଗୋଟାଏ କରିହିବ ନାହିଁ କାହିଁକି ?''

—''ମୁଁ ଭାବୁଛି ତା'ର ଦୁର୍ଭାଗ୍ୟର ସମୟ ଆସିଯାଇଛି—ସେଥିପାଇଁ ତା'ର ସବୁ ଦଲିଲଗୁଡ଼ିକ ପୋଡ଼ିଗଲ ।''

—''କଣ ତାଙ୍କର କାଗଜପତ୍ରଗୁଡ଼ାକ ଜଳିଗଲା ? ତେବେ ଏ ତ ସୁବର୍ଣ୍ଣ ସୁଯୋଗ ! ଏହି କେସ୍‌ରେ ନିଃସନ୍ଦେହ ଭାବେ ଆପଣ ଜିତିବେ ।''

—''ସତରେ ? ତାହା ଯଦି ହୁଏ ନା ମୁଁ ସବୁଦିନ ପାଇଁ ତୁମ ନିକଟରେ ଋଣୀ ହୋଇ ରହିଲି ।''

ମାଜିଷ୍ଟ୍ରେଟ୍ ଯାବାସଖିନ ଆଭୂମି ପ୍ରଣାମ କରି ବିଦାୟନେଲେ । ସେ ସେହିଦିନଠାରୁ ଡୁବ୍ରୋଭସ୍କିର ସମ୍ପତ୍ତି ବାଜ୍ୟାପ୍ତ କରିବାର ଉପାୟ ବାହାରକରିବାରେ ଲାଗିପଡ଼ିଲେ । ଦୁଇ ସପ୍ତାହ ନଯାଉଣୁ ସେ ଡୁବ୍ରୋଭସ୍କିଙ୍କୁ ତାଙ୍କ ସମ୍ପତ୍ତିର ସମସ୍ତ ଦଲିଲ ଖୁବ୍ ଶୀଘ୍ର ଦାଖଲ କରିବା ପାଇଁ ଆଦେଶନାମା ପଠାଇଲେ ।

ଡୁବ୍ରୋଭସ୍କି ଏଭଳି ଆଦେଶନାମା ପାଇ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସେ ମଧ୍ୟ ସଙ୍ଗେ ସଙ୍ଗେ ବେଶ୍ କଡ଼ା ଭାବେ ଚିଠିର ଉତ୍ତର ଲେଖି ପକାଇଲେ—"ଏହା ନିଶ୍ଚିତ ଯେ କିରିଲା ତାଙ୍କ ବାପାଙ୍କର ମୃତ୍ୟୁ ପରେ ଏଠାକୁ ଆସିଥିଲା ଏବଂ ତା'ର ବଂଶାନୁଗତ ଅଧିକାର ଭାବେ ତାକୁ ଧରିଥିଲା ।ଏଥିରେ ଅନ୍ୟମାନଙ୍କର ହସ୍ତକ୍ଷେପରେ କି ଆବଶ୍ୟକତା ଅଛି ? ଅନ୍ୟର ସମ୍ପତ୍ତିକୁ ନୂଆଗ୍ରେଖି କରିବା ବଡ଼ ନିନ୍ଦାର ବିଷୟ ।"

ଚିଠିଟି ପଢ଼ି ସାବାସଖିନ ଖୁସି ହେଲେ । କୌଣସି ସାଧାରଣ ଘଟଣା ଉପରେ ଡୁବ୍ରୋଭସ୍କି ଯେ ପ୍ରାଧାନ୍ୟ ଦେଉନଥିଲେ ତାହା ନୁହେଁ, ସେ ଜଣେ କ୍ଷଣକୋପୀ ବ୍ୟକ୍ତି ଥିଲେ । ଏହା ତାଙ୍କ ଚିଠିରୁ ସ୍ପଷ୍ଟ ପ୍ରମାଣିତ ହେଉଥିଲା । ଏଭଳି ବ୍ୟକ୍ତିକୁ ବିପଦରେ ପକାଇବାକୁ ତାଙ୍କୁ ବେଶି କଷ୍ଟ ହେବନାହିଁ ।

ଡୁବ୍ରୋଭସ୍କି ମାଜିଷ୍ଟ୍ରେଟଙ୍କ ଚିଠିଟିକୁ ଆଉ ଥରେ ନୀରବରେ ପଢ଼ିଲେ । ଚିଠିଟିର ଯଥାଯଥ ଉତ୍ତର ଦେବା ନିହାତି ଦରକାର ବୋଲି ସେ ଉପଲବ୍ଧି କଲେ । ସେ ବିଷୟରେ ଆଉ କିଛି ଲେଖିବାକୁ ସେ ଅନାବଶ୍ୟକ ମନେକଲେ ।

କେସ୍ ଆରମ୍ଭ ହେଲା । ଡୁବ୍ରୋଭସ୍କି ସେ ବିଷୟରେ ବିଶେଷ କିଛି ଚିନ୍ତା ବି କଲେନାହିଁ କିମ୍ବା ସେ ବିଷୟରେ ପଇସା ଖର୍ଚ୍ଚକରି ଓକିଲ ମଧ୍ୟ ଦେଲେନାହିଁ । ତାଙ୍କର ଦୁର୍ନୀତିଗ୍ରସ୍ତ କିରାଣୀମାନଙ୍କ ପ୍ରତି ଭଲ ମନୋଭାବ ନଥିଲା—ମୋଟ ଉପରେ ସେ ସେବିଷୟରେ କିଛି ଯତ୍ନ ମଧ୍ୟ ନେଲେ ନାହିଁ । କିରିଲାଙ୍କ ତରଫରୁ ସାବାସଖିନ କେସ୍ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ଏବଂ ଜଜମାନଙ୍କୁ ଯଥେଷ୍ଟ ଲାଞ୍ଚ ମଧ୍ୟ ଦେଇଥିଲେ । ୧୯୧୮ ମସିହା ଫେବୃଆରୀ ୯ ତାରିଖରେ ପୌରସଂସ୍ଥା ପୁଲିସଙ୍କଠାରୁ ଖଣ୍ଡିଏ ଚିଠି ପାଇଲେ । ସେଥିରେ ମାଜିଷ୍ଟ୍ରେଟ୍ଙ୍କ ପାଖରେ ଉପସ୍ଥିତ ହେବାକୁ ଡୁବ୍ରୋଭସ୍କିଙ୍କୁ ନିର୍ଦ୍ଦେଶ ଥିଲା । ଅଧିକୃତ ସମ୍ପତ୍ତି ଉପରେ ଥିବା କଳହର ମୀମାଂସାପାଇଁ ଜେନେରାଲ-ଇନ୍-ଚିଫ୍, କିରିଲା ପେଟ୍ରୋଭିଚ୍ଙ୍କୁ ଓ ଲେଫଟେନାଣ୍ଟ ଡୁବ୍ରୋଭସ୍କିଙ୍କୁ ଡକାଯାଇଥିଲା । ଡୁବ୍ରୋଭସ୍କି ସେହି ଦିନ ହିଁ ତାଙ୍କ ଯାତ୍ରା ଆରମ୍ଭକଲେ । ବାଟରେ ସେ କିରିଲାଙ୍କୁ ଭେଟିଲେ ।

ତୁହେଁ ତୁହିଁଙ୍କୁ କ୍ରୋଧପୂର୍ଣ୍ଣ ନୟନରେ ମୁହୂର୍ତ୍ତିକ ପାଇଁ ଚାହିଁଲେ । କିନ୍ତୁ ଡୁବ୍ରୋଭସ୍କି ବିପଖାତ ଦଗକୁ ମୁହଁ ବୁଲାଇ ଈର୍ଷାପୂର୍ଣ୍ଣ ଅନ୍ତରରେ ହସି-ଦେଲେ ।

## ଦ୍ୱିତୀୟ ଅଧ୍ୟାୟ

ଡୁବ୍ରୋଭସ୍କି ତାଙ୍କର ଜଣେ ବଣିକବନ୍ଧୁଙ୍କ ଘରେ ସେହି ସହରରେ ରହିଲେ । ସେ ତା'ପରଦିନ ସକାଳୁ ପ୍ରଥମେ ଯାଇ ମାଜିଷ୍ଟ୍ରେଟ୍‌ଙ୍କ ଘରେ ପହଞ୍ଚିଲେ । କିନ୍ତୁ ସେଠାରେ କେହି ଜଣେହେଲେ ବି ତାଙ୍କୁ ସମ୍ମାନ ଦେଲେନାହିଁ । ତାଙ୍କ ପରେ କିରିଲା ଯାଇ ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ କିରାଣୀ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀମାନେ ସସମ୍ମାନ ସ୍ୱାଗତ କରି ପାଛୋଟିନେଲେ ଏବଂ ବୟସ ଓ ସମ୍ମାନ ଦୃଷ୍ଟିରୁ ଆର୍ମ୍‌ଚେୟାର ବସିବାକୁ ଦେଲେ । ଦ୍ୱାର ନିକଟରେ ପଡ଼ିଥିବା ଆର୍ମ୍‌ଚେୟାରରେ ସେ ବସିପଡ଼ିଲେ । ସେତେବେଳକୁ ଡୁବ୍ରୋଭସ୍କି କାନ୍ଥକୁ ଆଉଜି ଛିଡ଼ା-ହୋଇଥିଲେ । ସେକ୍ରେଟାରୀ ଗମ୍ଭୀର ସ୍ୱରରେ କୋର୍ଟର ରାୟ ପଢ଼ିଦେଲେ ମୋକଦ୍ଦମା ଲାଗିଥିବା ଜମି ଉପରେ ମୋକଦ୍ଦମା ଫଇସଲା ନହେବା ପର୍ଯ୍ୟନ୍ତ କେହି ଚାଷ କରିପାରିବେ ନାହିଁ । ଏ ଦଲିଲଟି ଉପରେ ଦୁଇ ପକ୍ଷକୁ ଦସ୍ତଖତ କରିବାକୁ ପଡ଼ିବ ।

ଏତିକି କହିସାରିବା ପରେ ସେକ୍ରେଟାରୀ ଚୁପ୍ ରହିଲେ । ମାଜିଷ୍ଟ୍ରେଟ୍ କିରିଲାଙ୍କୁ ସମ୍ମାନ ଜଣାଇ ଉଠିଲେ ଏବଂ ଦଲିଲଟିରେ ଦସ୍ତଖତ କରିବାକୁ କହିଲେ । କିରିଲା ଖୁବ୍ ଖୁସିହୋଇ ତତ୍‌କ୍ଷଣାତ୍ ଦଲିଲରେ ଦସ୍ତଖତ କଲେ । ତାପରେ ସେକ୍ରେଟାରୀ ଦଲିଲଟି ଦସ୍ତଖତ କରିବା ପାଇଁ ଡୁବ୍ରୋଭସ୍କିଙ୍କୁ ଦେଲେ । କିନ୍ତୁ ଡୁବ୍ରୋଭସ୍କି ନିର୍ବାକ୍ ନିଷ୍ପନ୍ଦଭାବେ ଅବିଚଳିତ ରହି ମୁଣ୍ଡତଳକୁ କରି ଛିଡ଼ାହୋଇଥିଲେ । ଦଲିଲରେ ଦସ୍ତଖତ କରିବା ପାଇଁ ସେକ୍ରେଟାରୀ ତାଙ୍କୁ ବାରମ୍ବାର ବାଧ୍ୟ କଲେ ଏବଂ

କହିଥିଲେଯେ, ସେ ଯଦି ବିଚାରରେ ଅସନ୍ତୁଷ୍ଟ ତେବେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଉପର କୋର୍ଟର ଆଶ୍ରୟ ନେଇପାରନ୍ତି ।

ନୀରବନିଷ୍ଫଳ ଡ୍ରେଭର୍ସି ହଠାତ୍ ମୁଣ୍ଡ ଉଠାଇଲେ । ଆଖି ଦୁଇଟି ତାଙ୍କର ଧପ୍‌ଧପ୍ ହୋଇ ଜଳିଉଠିଲା । ସେ ସେକ୍ରେଟାରୀଙ୍କ ନିକଟକୁ ଦ୍ରୁତ ପଦକ୍ଷେପରେ ଚାଲିଗଲେ ଏବଂ ତାଙ୍କୁ ଖୁବ୍ ଜୋର୍‌ରେ ଏପରି ଏକ ଧକ୍‌କା ମାରିଲେ ଯେ ସେ ତଳେ କଚାଡ଼ିହୋଇ ପଡ଼ିଲେ । ତାପରେ ମାଜିଷ୍ଟ୍ରେଟଙ୍କ ଉପରକୁ କଲମରୁ କାଳି ଛିଟିଦେଲେ । "ଏକଣ ? ପ୍ରଭୁଙ୍କ ଦରବାରକୁ ଅସମ୍ମାନିତ କରୁଛ ?" ବୋଲି କହି ସମସ୍ତେ ଚିତ୍କାର କଲେ । ଡ୍ରେଭର୍ସି କିରଲଙ୍କୁ ଚୁଟି ଟାଣିଲେ ଓ କହିଲେ, "ମନ୍ଦିରଭିତରଯାକ ତୁମ କୁକୁରରେ ଭର୍ତ୍ତିକରଦେଲ । ମୁଁ ତୁମକୁ ଉଚିତ ଶିକ୍ଷା ଦେବି ।"

ଘର ଭିତରେ ପାଟିଗୋଳ ଶୁଣି ଜଗୁଆଳି କୋର୍ଟ ଭିତରକୁ ପଶିଯାଇ ବହୁ କଷ୍ଟରେ ଡ୍ରେଭର୍ସିଙ୍କୁ ଧରିପକାଇ ବସାଇଦେଲେ । କିରଲଙ୍କ ସହ ଉପସ୍ଥିତ ବ୍ୟକ୍ତିମାନେ ଡ୍ରେଭର୍ସିଙ୍କୁ ଅନୁସରଣ କଲେ । ଡ୍ରେଭର୍ସି ଏତେ ବଡ଼ ଅନ୍ୟାୟ ସହ୍ୟ କରିନପାରି ମସ୍ତିଷ୍କର ଭାରସାମ୍ୟ ହରାଇ ହଠାତ୍ ପାଗଳ ହୋଇଗଲେ । ଏଭଳି ଏକ ଅପ୍ରୀତିକର ପରିସ୍ଥିତି ଶେଷରେ ସୃଷ୍ଟି ହେବବୋଲି କିରଲ କେବେ ଭାବି ନଥିଲେ । ତାଙ୍କର ସମସ୍ତ ବିଜୟଉଲ୍ଲାସ ବନ୍ଧୁର ଏ ପରିସ୍ଥିତିରେ ଧୂଳିସାତ୍ ହୋଇଗଲା ।

ବିଜ୍ଞାପିତମାନେ ଅନେକ କିଛି ପାଇବା ଆଶାରେ ଉତ୍ଫୁଲ୍ଲ ହେଉ-ଥିବାବେଳେ କିରଲ ସେମାନଙ୍କୁ ସାମାନ୍ୟ ସୌଜନ୍ୟମୂଳକ ଧନ୍ୟବାଦଟିଏ ମଧ୍ୟ ନଦେଇ ସ୍ଥାନ ତ୍ୟାଗକଲେ । ଡ୍ରେଭର୍ସି ଶଯ୍ୟାଶାୟୀ ହେଲେ । ଜଣେ ଡାକ୍ତରଙ୍କ ଚେଷ୍ଟାରେ ସନ୍ଧ୍ୟାବେଳକୁ ସେ ତାଙ୍କର ଚେତା ଫେରିପାଇଲେ ଓ ଅପେକ୍ଷାକୃତ ସୁସ୍ଥ ଅନୁଭବ କଲେ । ତାପର ଦିନ ତାଙ୍କୁ ତାଙ୍କ ଗ୍ରାମକୁ ନିଆଗଲା ।

# ତୃତୀୟ ଅଧ୍ୟାୟ

ସମୟ ଆଗେଇ ଚାଲିଲା । ହତଭାଗ୍ୟ ଡୁବ୍ରୋଭସ୍କି କିନ୍ତୁ ତାଙ୍କ ସ୍ୱାସ୍ଥ୍ୟ ଫେରି ପାଇଲେ ନାହିଁ, ଯଦିଓ ତାଙ୍କର ପାଗଳାମି ଆଉ ଦେଖାଦେଇ ନଥିଲା । ତେବେ ସେ ଦିନକୁଦିନ ଅଧିକ ଦୁର୍ବଳ ହୋଇପଡ଼ିଲେ । ତାଙ୍କର ପୂର୍ବ ବ୍ୟବସାୟ ବୁଝିପାରିଲେ ନାହିଁ । ଅଧିକାଂଶ ସମୟ ଘର ଭିତରେ ଚିନ୍ତାମଗ୍ନ ହୋଇ ରହୁଥିଲେ । ୟୁଗୋ ରୋଭନା ତାଙ୍କର ଗୃହସେବିକା ଥିଲେ । ଡୁବ୍ରୋଭସ୍କି ସ୍ତ୍ରୀଙ୍କ ମୃତ୍ୟୁ ପରେ ପୁଅର ଯତ୍ନ ନେବାପାଇଁ ତାଙ୍କୁ ନିଯୁକ୍ତ କରିଥିଲେ । ସେ ବି ତାଙ୍କର ଯତ୍ନ ନେଉଥିଲେ—ଠିକ୍ ଗୋଟିଏ ଶ୍ରେଷ୍ଠପିଲାର ଯତ୍ନ ନେଲାପରି—ଏପରିକି ଖାଇବା ଶୋଇବା କଥା ମଧ୍ୟ ତାଙ୍କୁ ମନେପକାଇଦେଉଥିଲେ । ଡୁବ୍ରୋଭସ୍କି କିଛି ମନେରଖିପାରୁ-ନଥିଲେ, ନିଜ କଥା ବି ଭୁଲିଯାଉଥିଲେ । ପ୍ରଭୁଙ୍କର ଏ ଅବସ୍ଥା ଦେଖି ସେବିକା ତାଙ୍କ ପୁଅ ନିକଟକୁ ଚିଠି ଦେଲେ, ଯେ କି ପିଟର୍ସବର୍ଗର ନିର୍ବାପତ୍ତି ବାହିନୀରେ ଚାକିରି କରୁଥିଲେ ।

ଭ୍ଲାଦିମିର୍ ଡୁବ୍ରୋଭସ୍କି ଶିଶୁ ନିରାପତ୍ତା ବାହିନୀର ତତ୍ତ୍ୱାବଧାନରେ ବଢ଼ି ଉଠିଥିଲା । ତା ବାପା ତାର ସୁଖ ସ୍ୱାଚ୍ଛନ୍ଦ ପାଇଁ କୌଣସି ବ୍ୟବସ୍ଥା କର-ନଥିଲେ—କେବଳ ତା ନିକଟକୁ ଘରୁ ପ୍ରଚୁର ଟଙ୍କା ପଠାଯାଉଥିଲା । ତେଣୁ ସେ ନିଜର ଭବିଷ୍ୟତ ପ୍ରତି ଦୃଷ୍ଟି ନରଖି କେବଳ ବଦ୍‌ଖର୍ଚ୍ଚ କରି ଚାଲୁଥିଲା ।

ଦିନେ ସନ୍ଧ୍ୟାବେଳେ ଉଚ୍ଚପଦସ୍ଥ କର୍ମଚାରୀମାନେ ଯେତେବେଳେ ତା' ରୁମ୍‌ରେ ବସି ଆଡ଼୍‌ଡ଼ା ମାରୁଥିଲେ ଠିକ୍ ସେତିକବେଳେ ଖଣ୍ଡିଏ ଚିଠି ତା' ହାତକୁ ଆସିଲା । ସେ ଖାମଖିଆଲ ଭାବେ ଲଫାପାଟି ଚିରି ଚିଠିଟି ପଢ଼ିଲା ।

'ସ୍ନେହର ଭ୍ଲାଦିମିର,

ମୁଁ ତୁମର ବୃଦ୍ଧା ନର୍ସ । ତୁମ ବାପାଙ୍କର ଖରାପ ସ୍ୱାସ୍ଥ୍ୟ ବିଷୟରେ ଜଣାଉଅଛୁ । ସେ ଅତି ଶୋଚନୀୟ ଅବସ୍ଥାରେ ଅଛନ୍ତି । ସମୟେ ସମୟେ

ସେ ପ୍ରଳାପ କରୁଛନ୍ତି, ନଚେତ୍ ନିର୍ବାକ୍ ହୋଇ ବସି ରହୁଛନ୍ତି । ସେ ମୃତ୍ୟୁ ସହିତ ସଂଗ୍ରାମ କରିଚାଲିଛନ୍ତି । ତାଙ୍କ ଜୀବନ ଈଶ୍ୱରଙ୍କର ଦୟା ଉପରେ ନିର୍ଭର କରୁଛି । ମୋ ବାପାଟା ପରି, ଶୀଘ୍ର ଆସ । ଆମେ ଘୋଡ଼ା ପଠାଉଛୁ । ଲୋକମାନଙ୍କଠାରୁ ଶୁଣିବାକୁ ପାଉଛୁ ଯେ ଆମେ-ମାନେ ବର୍ତ୍ତମାନ କରିଲା ପେଟ୍ରୋଭିଚ୍‌ଙ୍କ ଶାସନାଧୀନ ଏବଂ କୋର୍ଟ ତରଫରୁ ତୁମ ନିକଟକୁ ମଧ୍ୟ ଚିଠି ପଠାଯାଇଛି । ସେ ଯାହାହେଉନା କାହିଁକି, ଆମେମାନେ ସର୍ବଦା ତୁମର ବିଶ୍ୱସ୍ତ । ତୁମେ ତ ପିଟର୍ସବର୍ଗରେ ରହୁଛ, ଜାର୍‌ଙ୍କୁ ଏକଥା ଜଣାଇଦେଲେ ଆମ ଅବସ୍ଥାରେ କିଛି ପରିବର୍ତ୍ତନ ହୁଅନ୍ତା । ମୁଁ ସର୍ବଦା ତୁମର ବିଶ୍ୱସ୍ତ ସେବାକାରିଣୀ ହୋଇ ରହିଛି ଓ ରହିଥିବ । ଆଶୀର୍ବାଦ ନେବ । ଇତି ।

ଓରିନା ୟୁଗୋରୋଭନା

ଭ୍ଲାଦିମିର ଉକ୍ତ୍ରୋଭସ୍କି ଚିଠିଟି ବାରମ୍ବାର ପଢ଼ିଲେ । ପଢ଼ିବା ସଙ୍ଗେ ସଙ୍ଗେ ବିଗତ ଅତୀତର ଅସ୍ପଷ୍ଟ ଦୃଶ୍ୟ ତାଙ୍କ ମାନସଚକ୍ଷୁରେ ସୁସ୍ପଷ୍ଟ ହୋଇଗଲା । ସେ ଶ୍ରେଷ୍ଠ ଥିଲାବେଳେ ମା ମରିଯାଇଥିଲେ । ତାକୁ ସାତବର୍ଷ ବେଳେ ସେ ପିଟର୍ସବର୍ଗକୁ ଆସିଲା । ସେ ତା ବାପାଙ୍କ ସଂସ୍ପର୍ଶରେ ଖୁବ୍ କମ୍ ଥର ଆସିଥିଲା । ତା' ସତ୍ତ୍ୱେ ସେ ବାପାଙ୍କୁ ବହୁତ ଶ୍ରଦ୍ଧା ଓ ଭକ୍ତି କରୁଥିଲା । ବାପାଙ୍କ କଥା ଭାବିଲା ବେଳକୁ ତା' ଚିତ୍ତ ଅଜଣା ଆତଙ୍କରେ ଥରିଉଠିଲା । ସେ ଗୁରୁତର ଅସୁସ୍ଥ ଓ ଶଯ୍ୟା-ଶାୟୀ । ଏବେ ଅସହାୟ ଭାବେ ସେହି ବୋକି ବୁଢ଼ୀ ନର୍ସ ଓ ଅନ୍ୟମାନଙ୍କ ଉପରେ ନିର୍ଭର କରୁଥିବେ । ସେକଥା ଚିନ୍ତା କଲାବେଳକୁ ଭ୍ଲାଦିମିର ନିଜକୁ ଅପରାଧୀ ମନେକଲା । ବହୁଦିନ ଧରି ସେ ତା ବାପାଙ୍କଠାରୁ କୌଣସି ଚିଠି ପାଇନଥିଲେ ମଧ୍ୟ ସେ ବିଷୟରେ କେବେ ଚିନ୍ତା ବି କରିନଥିଲା ।

ଭ୍ଲାଦିମିର ଘର ବାହୁଡ଼ା ପାଇଁ ସ୍ଥିର କଲା । ହୁଏ ତ ସେ ପହଞ୍ଚିବା ପରେ ତାକୁ ଦେଖି ତା ବାପା ଭଲହୋଇଯାଇପାରନ୍ତି । ତା ନିକଟରେ ଥିବା ବନ୍ଧୁମାନେ ତା'ର ହତାଶ ଭାବ ଲକ୍ଷ୍ୟକରି ଜଣେ ଜଣେ ବିଦାୟ-

ନେଲେ । ତତ୍ପରେ ଭ୍ଲାଦିମିର ଛୁଟି ପାଇଁ ଏକ ଦରଖାସ୍ତ ଲେଖିସାରି ଚିନ୍ତାମଗ୍ନ ହୋଇ ବସିରହିଲା । ଏହାର ତିନିଦିନ ପରେ ସେ ନିଜ ସହରରେ ଯାଇ ପହଞ୍ଚିଲା ।

ନିଜ ଜନ୍ମସ୍ଥାନ ସହରରେ ପାଦଦେବା ମାତ୍ରକେ ଭ୍ଲାଦିମିର୍‌ର ହୃଦ ଏକ ଅଜଣା ଆତଙ୍କରେ ଶିହରି ଉଠିଲି । ହେ ଈଶ୍ୱର—ସେ ବୋଧେ ତା'ବାପାଙ୍କୁ ଜୀବନ୍ତ ଅବସ୍ଥାରେ ଆଉ ଦେଖିପାରିବ ନାହିଁ । ଏହା ସହିତ ପଲ୍ଲୀଜୀବନର ଅସଫଳଗ୍ନ, ନିଃସଙ୍ଗ ଦାରିଦ୍ର୍ୟ ପରିବେଶର ଚିନ୍ତା ତାକୁ ଅସ୍ଥିର କରିପକାଉଥିଲି । ତାହାଛଡ଼ା ତା ବାପାଙ୍କ ସମ୍ପତ୍ତିର ସମସ୍ତ ଦାୟିତ୍ୱ ତା ଉପରେ ଏକ ବୋଝପରି ଲଦିହୋଇ ଗଲି । ଭରାକ୍ରାନ୍ତ ମନରେ, ସେ ଘରେ ପହଞ୍ଚିବାକୁ ଘୋଡ଼ାଟିଏ ମାଗିବା ପାଇଁ ନିକଟସ୍ଥ ପୋଷ୍ଟମାଷ୍ଟରଙ୍କ ନିକଟକୁ ଉଦ୍‌ବିଗ୍ନ ହୋଇ ଧାଇଁଯାଇଥିଲି । ଭ୍ଲାଦିମିର୍ ତାଙ୍କଠାରୁ ତା' ଘରୁ ଆସିଥିବା ଘୋଡ଼ାଗାଡ଼ି ବିଷୟରେ ଖବର ପାଇଲି । ଦୀର୍ଘ ଚାରିଦିନ ଧରି ଅପେକ୍ଷା କରି ରହିଥିବା କୋଚମ୍ୟାନ୍ ଭ୍ଲାଦିମିରଙ୍କୁ ଦେଖିବାମାତ୍ରକେ ହଠାତ୍ କାନ୍ଦିଉଠିଲି ଓ କାନ୍ଦି କାନ୍ଦି ବୃଦ୍ଧ ପ୍ରଭୁଙ୍କ ଅବସ୍ଥା ବିଷୟ ବର୍ଣ୍ଣନା କରିଥିଲି । ଭ୍ଲାଦ୍‌ମିର୍‌ଙ୍କୁ କିଛି ଜଳଖିଆ ଖାଇବାକୁ ସେ ଅନେକ ବାଧ୍ୟ କରିଥିଲେ ସୁଦ୍ଧା ସେ ନଖାଇ ଗାଡ଼ିରେ ବସିଗଲେ । ସେ ଦୁହିଁଙ୍କର କଥାବାର୍ତ୍ତା ସହିତ ଗାଡ଼ି ଗାଆଁ ରାସ୍ତାରେ ଗଡ଼ିଚାଲିଲି । ଭ୍ଲାଦିମିର୍ ପଚାରିଲି—"ମୋ ବାପା ଓ କିରିଲ ପେଟ୍ରୋଭିଚ୍ ଭିତରେ କ'ଣ କଳହ ହେଲି, ଆଣ୍ଟୋନ ?"

—"ପ୍ରଭୁ ଜାଣନ୍ତି—ଥରେ ଦୁହିଁଙ୍କ ଭିତରେ କଳି ହୋଇଥିଲି । କିରିଲ ତାଙ୍କ ନାମରେ କେସ୍ କଲେ । ଆମ ପ୍ରଭୁ କୋର୍ଟକୁ ଗଲେ । କିନ୍ତୁ, ଆଇନ କିରିଲଙ୍କ ହାତରେ ଥିଲି—ତେଣୁ ସେ ଜିଣିଲେ—ଆମ ପ୍ରଭୁ ଅସହାୟ ଭାବରେ ଏ ଅନ୍ୟାୟ ସହିଲେ ।"

—"ତାହାହେଲେ କିରିଲ ପେଟ୍ରୋଭିଚ୍ ତାଙ୍କ ଇଚ୍ଛାନୁଯାୟୀ ସବୁ କାର୍ଯ୍ୟ କରୁଥିବେ ?"

—"ହଁ, ଶ୍ରେଷ୍ଠବାବୁ, ଆଇନ କାନୁନ, ପୋଲିସ ଜଜ ସମସ୍ତେ ତାଙ୍କର କଥାରେ ଅଛନ୍ତି ।"

—"ସେ ଆମର ସବୁ ସମ୍ପତ୍ତି ନେଇଯାଇଛନ୍ତି, ଏ କଥା କ'ଣ ସତ ?"

—"ହଁ, ଆଜ୍ଞା, ଆମେ ଏକଥା ଆଗେ ଶୁଣିଥିଲୁ । ଏଇ କିଛି ଦିନ ପୂର୍ବରୁ ତାଙ୍କ ଦଳର ଜଣେ ଲୋକ ଆମ ଦଳର ମୁଖିଆଙ୍କୁ ଭେଟି କହିଲା, "ତୁମ ଦିନକାଳ ସରିଗଲାଣି । ତୁମେ ସମସ୍ତେ ବର୍ତ୍ତମାନ ଆମ ମୁନିବ କରିଲାଙ୍କ ଅଧୀନରେ । ତୁମେ କ'ଣ କରିଲା ପେଟ୍ରୋଭିଚ୍‌ଙ୍କୁ ମୁନିବ ରୂପେ ମାନିବାକୁ ପ୍ରସ୍ତୁତ ନୁହଁ ?"

ଆମ ମୁଖିଆ କହିଲେ—"କରିଲା ପେଟ୍ରୋଭିଚ୍ ? ଯିଏ ନିଜ ଲୋକ-ମାନଙ୍କର ଦେହକୁ ନିଅନ୍ତା ଗୁଲି ଜଳାଇଦେଇ ଯାବଜ୍ଜୀବନ ଦଣ୍ଡ ଦେଉଛି—ସେ ଆମମାନଙ୍କୁ କ'ଣ ଭଲରେ ରଖିବ ? ଆମେ କେବଳ ଆମ ମାଲିକଙ୍କର ସ୍ୱାସ୍ଥ୍ୟ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛୁ । ଆମେ ଆଉ କାହାକୁ ଚାହୁଁନାହୁଁ—କେବଳ ତୁମକୁ, ଗ୍ରେଟବାବୁ । ଆମକୁ ସେମାନଙ୍କୁ ଦିଅନାହିଁ ।" —ଏତିକି କହିସାରି ଚାବୁକ୍‌ରେ ଘୋଡ଼ାକୁ ବାଡ଼େଇଲା । ଘୋଡ଼ା ମଧ୍ୟ ଦ୍ରୁତ ଗତିରେ ଆଗେଇଚାଲିଲେ । ବୃଦ୍ଧ କୋଚ୍‌ମ୍ୟାନ୍‌ର ମର୍ମସ୍ପର୍ଶୀ କଥାରେ ଭ୍ଲାଦିମିର ଡୁବ୍ରୋଭସ୍କି ନୀରବ ରହି ଚିନ୍ତାମଗ୍ନ ହେଲା ।

ଗାଡ଼ି ଗଡ଼ି ଚାଲିଲା । ବନ, ଉପବନ, ନଦୀନାଳ, ପାହାଡ଼ ପର୍ବତ, ଝରଣା ଓ ଜନବସତି ଅତିକ୍ରମ କରି ଗାଡ଼ି ଆଗେଇଚାଲିଲା । ପରିଚିତ ସ୍ଥାନଗୁଡ଼ିକ ଦେଖିବା ପରେ ହଠାତ୍ ମାଶା ଟ୍ରୋଏକୁରୋଭ କଥା ଭ୍ଲାଦିମିର୍‌ର ମନ ଭିତରେ ଉଙ୍କିମାରିଲା । ମାଶା ତା'ଠାରୁ ଦୁଇବର୍ଷ ସାନ । ସେ ଖୁବ୍ ସୁନ୍ଦରୀ ଥିଲା । ପିଲାଦିନର ସେହିସବୁ କଥା ମନେପଡ଼ିବା ସଙ୍ଗେ ସଙ୍ଗେ ଭ୍ଲାଦିମିର୍ ତା'ବିଷୟରେ ଜାଣିବା ପାଇଁ କୋଚ୍‌ମ୍ୟାନ୍ ଆଣ୍ଟୋନକୁ ପଚାରିବାକୁ ଚାହୁଁଥିଲା —କିନ୍ତୁ ସଙ୍କୋଚ ଅନୁଭବ କରି କିଛି ପଚାରି ପାରିନଥିଲା ।

କରିଲା ଟ୍ରୋଏକୁରୋଭଙ୍କ ଘର ନିକଟ ହେବା ମାତ୍ରକେ ଆଣ୍ଟୋନ ଘୋଡ଼ାଙ୍କୁ ଚାବୁକ୍‌ମାରି ଗାଡ଼ି ଦ୍ରୁତଗତିରେ ଚଳାଇଲା ଓ ପରିଚିତ ଗାଁକୁ ପଛରେ ପକାଇ ଗାଡ଼ି ଆଗେଇନେଲା । ପାର୍ବତ୍ୟ ଅଞ୍ଚଳରେ

ଖୋଲା ପଡ଼ିଆ ଭିତରେ ଗୋଟିଏ ଶ୍ରେଷ୍ଠ କୁଡ଼ିଆ ଘର ଦେଖି ଭ୍ଲାଦିମିରର ହୃଦୟ ପ୍ରଚଣ୍ଡ ହର୍ଷସ୍ପନ୍ଦିତ ହୋଇଉଠିଲା ଏବଂ ତତ୍ସମ୍ବନ୍ଧୀୟ ପୂର୍ବର ଗୃହ ଚଳଣି ବିଷୟ ତା'ର ମାନସଚକ୍ଷୁରେ ଉଦ୍ଭାସିତ ହୋଇଉଠିଲା ।

ପ୍ରାୟ ଦଶ ମିନଟ୍ ପରେ ସେ ତା'ର ଗୃହ ସମ୍ମୁଖକୁ ଆସିଲା ଓ ଭାବପ୍ରବଣ ହୋଇ ଠିଆହେଲା । ଦୀର୍ଘ ବାରବର୍ଷ ହେଲା ସେ ତା'ର ଜନ୍ମସ୍ଥଳିକୁ ଦେଖିନଥିଲା । ଘରଆଡ଼କୁ ଆଖି ବୁଲାଇବା ମାତ୍ରକେ ଘରର ପୋଷା କୁକୁରଗୁଡ଼ିକୁ ଦେଖିଲା । ସେଗୁଡ଼ିକ ଏ ଭିତରେ ଖୁବ୍ ବଡ଼ ହୋଇ ଯାଇଥିଲେ । ତାଙ୍କ ବଗିଚାଟି ଘନ ଗଛରେ ଜଙ୍ଗଲ ହୋଇଯାଇଥିଲା । ମଝିରେ କୂଅ—ତା' ଚାରିପାଖରେ ଶ୍ରେଷ୍ଠ ବଡ଼ ଅନେକ ଫୁଲ ଓ ଫଳ ଗଛ । ଅଦୂରରେ ଥିବା ପଡ଼ିଆରେ ଘୋଡ଼ା ଚରୁଥିଲେ । ଭ୍ଲାଦିମିର୍‌କୁ ଦେଖି କୁକୁରଗୁଡ଼ାକ ବଡ଼ପାଟିରେ ଭୁକିଉଠିଲେ । କିନ୍ତୁ ହଠାତ୍ ଆଗନ୍ତୁକକୁ ଦେଖି ଭୁକିବା ବନ୍ଦକରି ଲାଞ୍ଜ ହଲାଇ ହଲାଇ ନିଜର କୃତଜ୍ଞତା ଜଣାଇଲେ । କୁକୁରଙ୍କ ଭୁକିବା ଶୁଣି ଘର ଭିତରୁ ଚାକର-ମାନେ ଧାଇଁଆସି ଗାଡ଼ି ଚାରିପାଖେ ଘେରିରେ ଘେରିଗଲେ । ମନର ଉଦ୍‌ବିଗ୍ନତା ଯୋଗୁ ଭ୍ଲାଦିମିର୍ କାହାରି ପ୍ରତି ଦୃଷ୍ଟି ନଦେଇ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ପାହାଚ ଉପରକୁ ଉଠିଗଲା ଓ ସିଡ଼ି ପାହାଚରେ ନିଜ ସ୍ନେହମୟୀ ଭଉଣୀକୁ ଦେଖିଲା । ସ୍ନେହମୟୀ ଭଉଣୀ ତାକୁ କୁଣ୍ଢାଇ ପକାଇ କାନ୍ଦିଉଠିଲା ।

"ମୋ ବାପା କେଉଁଠି ? ସେ କିପରି ଅଛନ୍ତି ?"—ଉଦ୍‌ବିଗ୍ନ ଭ୍ଲାଦିମିର୍ ପଚାରିଲା । ଠିକ୍ ସେହି ମୁହୂର୍ତ୍ତରେ ଜଣେ ଦୀର୍ଘକାୟ, ବିବର୍ଣ୍ଣ ଓ ଜୀର୍ଣ୍ଣ-ଶୀର୍ଣ୍ଣ ବ୍ୟକ୍ତି ପାଦ ଘୋଷାରି ଘୋଷାରି ଘର ଭିତରୁ ବାହାରିଆସିଲେ । —"ଭ୍ଲାଦିମିର୍ ତୁ ଆସିଲୁ !—" ସେ ଆଶ୍ଚର୍ଯ୍ୟହୋଇ ଉଚ୍ଚସ୍ୱରରେ କହିଲେ ଏବଂ ଭ୍ଲାଦିମିର୍ ଆକୁଳ ପ୍ରାଣରେ ଆଗେଇଯାଇ ତା ବାପାଙ୍କୁ କୁଣ୍ଢାଇ-ପକାଇଲା ।

ରୁଗ୍‌ଣ ପିତାଙ୍କ ପାଇଁ ଏହାହିଁ ସର୍ବାଧିକ ଆନନ୍ଦ ଥିଲା । ସେ ହଠାତ୍ ଦ୍ରୁତଗତିରେ ଚାଲିବାକୁ ଯାଇ କମ୍ପିଉଠି ପଡ଼ିଗଲେ । ନର୍ସ ସ୍ନେହ-

ସେଉନା କହିଲା, "ଆପଣ କାହିଁକି ବିଛଣାରୁ ଉଠିଆସିଲେ ? ଠିଆହୋଇ ପାରୁନାହାନ୍ତି, ପଡ଼ିଯାଉଛନ୍ତି ।"

ତାଙ୍କୁ ଟେକିନେଇ ବିଛଣାରେ ଶୁଆଇଦିଆଗଲା । ସେ ପୁଅ ସହିତ କଥାବାର୍ତ୍ତା କରିବାକୁ ଚାହୁଁଥିଲେ ମଧ୍ୟ କଥା କହିପାରୁନଥିଲେ । କେବଳ କେତେଗୁଡ଼ିଏ ଦରଖଣ୍ଡିଆ ବାକ୍ୟ ଉଚ୍ଚାରଣ କରୁଥିଲେ । ହଠାତ୍ ସେ କଥା କହିବା ବନ୍ଦକରି ଢୁଳେଇପଡ଼ିଲେ । ଭ୍ଲାଦ୍‌ମିର୍ ତାଙ୍କର ଏ ଅବସ୍ଥା ଦେଖି ମନରେ ଭୀଷଣ ଆଘାତପାଇଲା ଏବଂ ସ୍ଥିର କଲା ଯେ, ସେ ତାଙ୍କ ପାଖେ ପାଖେ ସବୁବେଳେ ରହିବ । ସେ ତା'ର ଜିନିଷପତ୍ର ବାପାଙ୍କ ରୁମ୍‌ରେ ରଖିବାକୁ କହି ନିଜର ନିତ୍ୟକର୍ମ କରିବାକୁ ଚାଲିଗଲା ।

# ଚତୁର୍ଥ ଅଧ୍ୟାୟ

ଘରେ ପହଞ୍ଚିବାର ଅଳ୍ପ କେତୋଟି ଦିନ ପରେ ଯୁବକ ଭ୍ଲାଦ୍‌ମିର୍ ତାଙ୍କ ଜମିଦାରିର ଖବର ବୁଝିବା ପାଇଁ ଆଗ୍ରହ ପ୍ରକାଶ କଲା । କିନ୍ତୁ ତା ବାପା ସେ ବିଷୟରେ ସମ୍ପୂର୍ଣ୍ଣ ତଥ୍ୟ ଯୋଗାଇବାକୁ ଏକାନ୍ତ ଅସମର୍ଥ ଥିଲେ । ସେ ତାଙ୍କ ଜମିଜମାର ତଦାରଖ କରିବା ନିମନ୍ତେ କେବେ ବି ଓକିଲ ନିଯୁକ୍ତ କରିନଥିଲେ । ଭ୍ଲାଦ୍‌ମିର୍ ତା'ର ବାପାଙ୍କର କେସ୍ ସମ୍ବନ୍ଧୀୟ କାଗଜପତ୍ର କିଛି ପାଇଲା ନାହିଁ । କେବଳ ମାଜିଷ୍ଟ୍ରେଟ୍‌ଙ୍କ ପ୍ରଥମ ଚିଠି ଓ ବାପାଙ୍କ ଲିଖିତ ଚିଠିର ଉତ୍ତର କାଗଜଟି ମିଳିଥିଲା । ସେଥିରୁ ସେ କେସ୍ ବିଷୟରେ ସଠିକ୍ କାରଣ ଜାଣିବାକୁ ପାଇଲା ନାହିଁ । ତେଣୁ ସେ ସମସ୍ତର ବିଚାରଧାରା ଅପେକ୍ଷାରେ ରହିଲା । ସେତେବେଳକୁ ମଧ୍ୟ ପିତାଙ୍କ ସ୍ୱାସ୍ଥ୍ୟର ଅବନତି ଘଟିଲା । ସେଥିପାଇଁ ଭ୍ଲାଦ୍‌ମିର୍‌କୁ ତାଙ୍କ ନିକଟରେ ପ୍ରାୟ ରହିବାକୁ ପଡ଼ୁଥିଲା ।

ଏହା ଭିତରେ କୋର୍ଟରେ ଅପିଲ କରିବାର ତାରିଖ ପୂରିଗଲା । ସେ କିଛି କହିପାରିଲା ନାହିଁ । ତ୍ରୁବ୍ରୋଭସ୍କିଙ୍କର ଜମିଦାରି କିରିଲା

ଟ୍ରୋଏକୁରୋଭଙ୍କର ହୋଇଗଲା । ମାଜିଷ୍ଟ୍ରେଟ୍ ସାବାସକିନ କର୍ଣ୍ଣେଲଙ୍କୁ ଅଭିନନ୍ଦନ ଜଣାଇବାପାଇଁ ତାଙ୍କ ନିକଟରେ ନତମସ୍ତକ ହୋଇ ଉପସ୍ଥିତ ହେଲେ । ନୂତନ ଅଞ୍ଚଳରେ ତାଙ୍କର ଅଧିକାର ସାବ୍ୟସ୍ତ କରିବା ପାଇଁ କୋର୍ଟ ଆଦେଶର କୌଣସି ଆବଶ୍ୟକତା ଅଛି କି ନା ତାହା ସେ ଜାଣିବାକୁ ଚାହୁଁଥିଲେ । କର୍ଣ୍ଣେଲ ପେଟ୍ରୋଭିଚ୍‌ର ସମସ୍ତ ରାଗ ପ୍ରଶମିତ ହୋଇଯାଇଥିଲା । ସେ ନିଜର ଭୁଲ ବୁଝିପାରି ବିବେକର ଦଂଶନରେ ବିବ୍ରତ ହୋଇଉଠିଥିଲେ । ସେ ଚିନ୍ତାକଲେ—ଯାହା ପ୍ରତି ସେ ଏତେଦୂର ନିଷ୍ଠୁର ହୋଇପାରିଲେ ସେ ତାଙ୍କ ପିଲାଦିନର ବନ୍ଧୁ । ତା' ଛଡ଼ା ତାଙ୍କ ଅବସ୍ଥା ମଧ୍ୟ ଶୋଚନୀୟ ହୋଇପଡ଼ିଛି । ତେଣୁ ସେ କେଉଁରେ ଜିଣି ମଧ୍ୟ ଆନନ୍ଦିତ ହୋଇପାରିଲେ ନାହିଁ । ଏଭଳି ମାନସିକ ଅବସ୍ଥାରେ ସେ ସାବାସକିନ୍‌ଙ୍କୁ ଦେଖି ଭୟଙ୍କର ଭାବେ ରାଗିଯାଇ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ କହିଲେ—"ଚାଲିଯାଅ, ମୋର ଅନ୍ୟ କାମ ଅଛି ।"

କର୍ଣ୍ଣେଲଙ୍କର ଅବସ୍ଥା ଦେଖି ସାବାସ୍‌କିନ ନତମସ୍ତକରେ ଘରୁ ବାହାରିଗଲେ । ତାଙ୍କ ସଙ୍ଗେ ସଙ୍ଗେ କର୍ଣ୍ଣେଲ ବିଚଳିତ ଭାବେ କିଛି ସମୟ ପଦ ଚାରଣ କଲେ । ତାପରେ ହଠାତ୍ ବାହାରକୁ ଚାଲିଗଲେ । ଏହି ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ କର୍ଣ୍ଣେଲ ପେଟ୍ରୋଭିଚ୍, ଡୁବ୍ରୋଭସ୍କିଙ୍କ ଘର ଦେଖିବା ମାତ୍ରକେ ସେ ଭାବପ୍ରବଣ ହୋଇଉଠିଲେ । ମୁହୂର୍ତ୍ତିକ ପାଇଁ ତାଙ୍କ ନିଜର ଅସୀମ କ୍ଷମତା ପାଇଁ ସେ ଗର୍ବ ଅନୁଭବ କଲେ ଓ ଗର୍ବୋଚ୍ଛ୍ୱାସରେ ଅନ୍ଧ ହୋଇ ବନ୍ଧୁର କଥା ବିଚାର କରିବା ପାଇଁ ସିଧା-ସଳଖ ବଗିଚା ଭିତରକୁ ପଶିଗଲେ ।

ରୁଗ୍‌ଣ ଡୁବ୍ରୋଭସ୍କି ତାଙ୍କର ଶୋଇବା ଘରର ଝରକା ପାଖରେ ବସିଥିଲେ, କର୍ଣ୍ଣେଲଙ୍କୁ ଦେଖି ସେ ଭୟରେ ଥରିଉଠିଲେ । ମୁହଁ ତାଙ୍କର ନାଲି ହୋଇଗଲା । ଗଣ୍ଡଦେଶ ବିବର୍ଣ୍ଣ ହୋଇ ଉଠିଲା । ଆଖି ଦୁଇଟି ଅସ୍ୱାଭାବିକ ଭାବେ ଚକ୍‌ଚକ୍ କରିଉଠିଲା ଏବଂ ସେ ଅସ୍ପଷ୍ଟ ଭାବରେ କ'ଣ ସବୁ କହିଗଲେ । ବାପାଙ୍କର ସେ ଅସ୍ପଷ୍ଟ କଥା ଶୁଣି ହିସାବ ଲେଖୁଥିବା ଭ୍ଲାଦିମିର ତାଙ୍କୁ ଚାହିଁଲା । ହଠାତ୍ ତା' ବାପା ରାଗ ଓ କ୍ରୋଧରେ ସେ

ଝରକା ପାଖରୁ ଉଠିଯାଉଯାଉ ତଳେ ସଜ୍ଞାହୀନ ହୋଇ ପଡ଼ିଗଲେ । ଭ୍ଲାଦମିର ଦୌଡ଼ିଯାଇ ତାଙ୍କୁ ଉଠାଇ ଧରିଲା । ଦ୍ୱିତୀୟ ଥର ହୃଦରୋଗ ଆକ୍ରମଣ ଯୋଗୁଁ ସେ ନିଃଶ୍ୱାସ ନେବାରେ କଷ୍ଟ ଭୋଗୁଥିଲେ ।

"ବାପାଙ୍କ ଚିକିତ୍ସା ପାଇଁ ଶୀଘ୍ର ସହରକୁ ନେବାକୁ ହେବ ।" ଭ୍ଲାଦମିର ପାଟିକରି କହିଲା । ଠିକ୍ ସେତିକବେଳେ ଜଣେ ଅପରିଚିତ ବ୍ୟକ୍ତି ଘର ଭିତରକୁ ପ୍ରବେଶକଲା ଏବଂ କରିଲା ପେଟ୍ରୋଭିଚ୍ ଯେ ତାଙ୍କୁ ଦେଖିବାକୁ ଚାହୁଁଛନ୍ତି ସେକଥା ଜଣାଇଲା ।

ସେହିଭଳି ଏକ ସଙ୍କଟମୟ ଅବସ୍ଥାରେ ଏକଥା ଶୁଣି ଭ୍ଲାଦମିର ଭୟଙ୍କର ରାଗି ଉଠି କହିଲା—"କରିଲା ପେଟ୍ରୋଭିଚ୍‌ଙ୍କୁ କୁହ, ସେ ଶୀଘ୍ର ବଗିଚା ଭିତରୁ ବାହାରିଯାଆନ୍ତୁ—ନଚେତ୍ ମୋ ଲୋକ ଲଗାଇ ବାହାରକରିଦେବି ।"

ଉତ୍କ୍ଷିପ୍ତ ଓ ବ୍ୟଗ୍ର ଭାବରେ ଘରୁ ବାହାରି ଯାଉଥିବା ଚାକରକୁ ଧରି ରଖିବାକୁ ଯାଇ ନର୍ସ ୟୁଗୋରୋଭନା ଭ୍ଲାଦମିରକୁ କାତର କଣ୍ଠରେ କହିଲା—"ସାନବାବୁ, ନିଜକୁ ବିପଦରେ ପକାଅ ନାହିଁ ।" ଭ୍ଲାଦମିର କହିଲା—"ନାନୀ, ଚୁପ୍‌ରୁହ । ଶୀଘ୍ର ଆଣ୍ଟୋନକୁ ସହରକୁ ପଠାଇ ଡାକ୍ତରଙ୍କୁ ଅଣାଅ ।"

ୟୁଗୋରୋଭନା ବାହାରକୁ ଚାଲିଗଲା । ଘର ଭିତରୁ ସମସ୍ତ ପରିଚାରକ କରିଲାଙ୍କ ନିକଟକୁ ଚାଲିଯାଇ ତାଙ୍କ ସାନବାବୁଙ୍କର ଆଦେଶ ଜଣାଇ-ଦେଲେ । ଏହାଶୁଣି କରିଲା କ୍ରୋଧରେ ଅନ୍ଧ ହୋଇଉଠିଲେ । କୁଟିଳ ହାସ ଧାରେ ତାଙ୍କ ଅଧରରେ ଫୁଟିଉଠିଲା ଏବଂ ଯୁବକକୁ ଉଚିତ ଶିକ୍ଷା ଦେବାକୁ ଠିକ୍‌କରି ସେ ସେହି ସ୍ଥାନ ତ୍ୟାଗକଲେ । ବଗିଚାରୁ ସେ ବାହାରିଆସିବା ପୂର୍ବରୁ ସେ ଥରେ ସେଇ ଝରକା ଆଡ଼କୁ କେବଳ ଚାହିଁଲେ ।

ପରିଚାରକଦଳ ଘଟିଯାଇଥିବା ଘଟଣା ବିଷୟରେ ଆଲୋଚନା କରୁଥିବା ବେଳେ ଭ୍ଲାଦମିର ସେଠାରେ ପହଞ୍ଚି ରୁକ୍ଷସ୍ୱରରେ କହିଲେ—"ଡାକ୍ତର ଡାକିବା ଆଉ ଦରକାର ନାହିଁ । ମୋ ବାପା ଆଉ ନାହାନ୍ତି ।"

ଏହା ଶୁଣି ସେଠାରେ ଥିବା ପରିଚାରକମାନେ ସେମାନଙ୍କ ବୃଦ୍ଧ ମୁନିବଙ୍କ ନିକଟକୁ ଠେଲାପେଲା ହୋଇ ଧାଇଁଗଲେ । ସେ ଏକ ଆରାମ ଚେୟାର୍‌ରେ ଶୋଇଥିଲେ ଓ ତାଙ୍କର ଡାହାଣ ହାତଟି ତଳକୁ ଓହଳି-ପଡ଼ିଥିଲା ଓ ମୁଣ୍ଡ ଏକ ପଟକୁ ଢଳିପଡ଼ିଥିଲା । ଏପରି ଭାବରେ ତାଙ୍କର ନିର୍ଜୀବ ଦେହଟି ପଡ଼ିରହିଥିଲା । ତାପରେ ବହୁଦିନ ପୂର୍ବରୁ ତାଙ୍କପାଇଁ ତିଆରିହୋଇଥିବା ତାଙ୍କର ଶେଷ ପୋଷାକ ତାଙ୍କୁ ପିନ୍ଧାଇଦିଆଗଲା । ଘରର ବିଶ୍ୱସ୍ତ ପରିଚାରକମାନେ ସ୍ୱର୍ଗତ ମାଲିକଙ୍କୁ ବେଢ଼ି ବସିରହିଲେ । ତାପରେ ତାଙ୍କର ଚିରପରିଚିତ ସେହି ଟେବୁଲ ଉପରକୁ ତାଙ୍କୁ ଟେକି ନେଇଗଲେ ।

## ପଞ୍ଚମ ଅଧ୍ୟାୟ

ହତଭାଗ୍ୟ ଡୁବ୍ରୋଭସ୍କିଙ୍କ ଶବକୁ ଅନ୍ତିମ ସମ୍ମାନ ଜଣାଇବା ପାଇଁ ତିନି ଦିନ ପର୍ଯ୍ୟନ୍ତ ଟେବୁଲ ଉପରେ ରଖାଗଲା ଓ ଚତୁଃପାର୍ଶ୍ୱକୁ ଆଲୋକ-ମାଳାରେ ସଜ୍ଜିତ କରାଗଲା । ନିର୍ଦ୍ଧାରିତ ସମୟ ବିତିବା ପରେ ପୁତ୍ର ଭ୍ଲାଦିମିରଙ୍କ ସହ ଅନ୍ୟ ତିନିଜଣ ମିଶି କଫିନ ଉଠାଇଲେ । ମନ୍ତ୍ର ପଢ଼ାଗଲା । ସେତେବେଳେ ପାଗ ବେଶ୍ ଭଲ ଥିଲା । ଶରତର ଆଗମନ ଯୋଗୁଁ ଗଛରୁ ପତ୍ର ଝଡ଼ିପଡ଼ୁଥିଲା । ଭ୍ଲାଦିମିର ମା'ଙ୍କ ସମାଧି ନିକଟରେ ତାର ବାପାଙ୍କୁ ସମାଧି ଦେଲା । ଗମ୍ଭୀର ଦୁଃଖାବହ ପରିବେଶ ଭିତରେ ସମାଧି ପ୍ରଦାନ କରାଗଲା । ସେତେବେଳେ ଭ୍ଲାଦିମିର କାନ୍ଦୁ ନଥିଲା କି ପ୍ରାର୍ଥନା ମଧ୍ୟ କରୁନଥିଲା । ତାର ସରସ ମୁଖମଣ୍ଡଳଟି ହତାଶାରେ ଭରି-ଯାଇଥିଲା । ସେ ପ୍ରଥମେ ତାର ବାପାଙ୍କୁ ଅନ୍ତିମ ସମ୍ମାନ ଜଣାଇ ସେ ସ୍ଥାନ ତ୍ୟାଗ କଲା—ତାପରେ ସେଠାରେ ସମବେତ ସମସ୍ତ କୃଷକ ତାଙ୍କର ପ୍ରିୟ ମୁନିବଙ୍କୁ ସମ୍ମାନ ଜଣାଇ ନତଶିରରେ ଫେରିଆସିଲେ ।

ସ୍ୱର୍ଗତ ମୁନିବଙ୍କ ଅନ୍ତ୍ୟେଷ୍ଟିକ୍ରିୟା କରିବା ନିମନ୍ତେ ମୁନିବଙ୍କ ତରଫରୁ

ପୁରୋହିତଙ୍କୁ ଡାକିବା ପାଇଁ ସୁଗୋରୋଭନା ନିଜେ ଗଲା । ପୁରୋହିତ ଓ ତାଙ୍କ ସ୍ତ୍ରୀଙ୍କ ସହ ଆସିବା ସମୟରେ ସେ ଘଟିଯାଇଥିବା ସମସ୍ତ ଘଟଣା ତାଙ୍କ ନିକଟରେ କହିଲା । ଯୁବମୁନିବଙ୍କ ଭବିଷ୍ୟତ ପ୍ରତି ଶଙ୍କାକୁଳ ଥିବା ସୁଗୋରୋଭନାକୁ ସାନ୍ତ୍ୱନା ଦେଇ ପୁରୋହିତଙ୍କ ସ୍ତ୍ରୀ କହିଲେ— "ଯାହା ଘଟିବାକୁ ଥିବ ତାହା ନିଶ୍ଚୟ ହେବ ।" ସୁଗୋରଭନା ଚିନ୍ତାକୁଳ ଭାବେ କହିଲେ—"ପ୍ରଭୁ, ଆମ ଭ୍ଲାଦମିରକୁ ରକ୍ଷାକରନ୍ତୁ । କିରିଲ ଭୀଷଣ ଗର୍ବୀ ଓ ପ୍ରତିଶୋଧପରାୟଣ । ମୋ ଭ୍ଲାଦମିର ତାକୁ ପାଜି କୁକୁର କହି ଗାଳିଦେଲା—ସେ ଶୁଣିଛନ୍ତି । କାହିଁକି ସେ ଏମିତି କହିଲା ? ଆମେ କିରିଲ ପେଟ୍ରୋଭିଚ୍‌ଙ୍କୁ କହିବା ଅପେକ୍ଷା ବରଂ ଖ୍ରିଷ୍ଟଙ୍କୁ କହିବା । ତାଙ୍କର ସେତେବେଳର ପରିସ୍ଥିତି କଥା ଭାବିଲାବେଳକୁ ମୋ ରୋମମୂଳ ଟାଙ୍କୁରି ଉଠୁଛି । ଭ୍ଲାଦମିର ନୀରବ ରହିଚ ।"

ପୁରୋହିତ କଥା ବଦଳାଇ କହିଲେ—"ତୁବ୍ରୋଭସ୍କିଙ୍କ ଭଳି ଦେବ-ପ୍ରତିମ ଲୋକଙ୍କ ପାଇଁ ନିଶ୍ଚୟ ବଡ଼ଧରଣର ଆୟୋଜନ ହେବ ଓ ବହୁତ ଲୋକଙ୍କୁ ନିମନ୍ତ୍ରଣ କରାଯିବ ।"

ସୁଗୋରଭନା କହିଲା—"ପୁରୋହିତେ, ମୁଁ ଭାବୁଛି, ଆମର ସବୁ ପଡ଼ୋଶୀଙ୍କୁ ଡକାଯିବ । ବହୁତ ଖାଦ୍ୟ ସାମଗ୍ରୀ ଅଛି । ଅତିଥିମାନଙ୍କୁ ଯଥୋଚିତ ସମ୍ମାନ ଦେବାକୁ କେବେ ପଶ୍ଚାତ୍‌ପଦ ହେବୁ ନାହିଁ ।"

ଉଦାର ମନୋଭାବ ଓ ସଦିଚ୍ଛା ନେଇ ସେମାନେ ଡୁବ୍ରୋଭସ୍କିର ଘରେ ପହଞ୍ଚିଲେ । ସେଠାରେ ସେମାନଙ୍କୁ ସମାଦରରେ ପାର୍ଲ୍ଲେରି ନିଆଯାଇ ଖାଦ୍ୟ ପାନୀୟ ପରିବେଷଣ କରାଗଲା ।

ତାପରେ ଭ୍ଲାଦମିର ତାଙ୍କର ଦୁଃଖ ପ୍ରଶମନପାଇଁ ବଗିଚା ଭିତରକୁ ଗଲେ । କୌଣସି ବିଷୟରେ ଚିନ୍ତା ନକରି ସେ ଆଗେଇ ଚାଲିଲେ । ଯିବା ସମୟରେ ବାଟ ଉପରକୁ ନଇଁପଡ଼ିଥିବା ଡାଳଗୁଡ଼ିକୁ ଭାଙ୍ଗିଦେଉଥିଲେ । ସନ୍ତସନ୍ତିଆ ମାଟିରେ ତାଙ୍କ ପାଦ ଦବିଯାଉଥିଲେ ମଧ୍ୟ ସେ ଦ୍ୱିଧା ନକରି ଆଗେଇ ଚାଲୁଥିଲେ । ଶେଷରେ ସେ ଏକ ଜଳାଶୟ ନିକଟରେ ପହଞ୍ଚିଲେ ।

ଜଳାଶୟର ଚତୁର୍ଦ୍ଦିଗ ଅରଣ୍ୟ ପରିବେଷ୍ଟିତ ଥିଲା । ମନେହେଉଥିଲା ଶରତର ପତ୍ରଝଡ଼ା ପ୍ରକୃତି ଏଠାରେ ନିଜର ପରାଜୟ ସ୍ୱୀକାର କରିଛି । ଅରଣ୍ୟାନୀର ମନୋରମ ପରିପାଟୀ ଦେଖି ଭ୍ଲାଦମିର କିଛି ସମୟ ଠିଆ ହୋଇଗଲେ ଓ ପରେ ସେହି ଶାନ୍ତ ନିସ୍ତବ୍ଧ ସ୍ଥାନରେ ବସିପଡ଼ିଲେ । ସେ ନିଜର ବର୍ତ୍ତମାନର ଅସହାୟ ଅବସ୍ଥା ଓ ଅନ୍ଧକାର ଭବିଷ୍ୟତ ବିଷୟରେ ଚିନ୍ତିତ ହୋଇପଡ଼ିଥିଲେ । କିରିଲା ପେତ୍ରୋଭିଚ୍ ଟ୍ରୋଏକୁରୋଭଙ୍କ ଶତ୍ରୁତା ତାଙ୍କ ପ୍ରାଣତନ୍ତ୍ରୀକୁ ଛିନ୍ନଭିନ୍ନ କରିଦେଉଥିଲା । ତାଙ୍କର ସମସ୍ତ ସମ୍ପତ୍ତି କିରିଲାଙ୍କ ହାତକୁ ଚାଲିଯାଉଥିଲା ଓ ଦରିଦ୍ରତା ସତେ ଯେପରି ତାଙ୍କୁ ଅପେକ୍ଷା କରି ରହିଥିଲା । ସେ ଝରଣା କୂଳରେ ବସିରହି ଜଳ ସ୍ରୋତରେ ଭାସିଯାଉଥିବା ଶୁଖିଲା ପତ୍ରଗୁଡ଼ିକୁ ଚାହିଁ ଭାବନାରେ ମଗ୍ନ ରହିଥିଲେ । କ୍ରମେ ଦିନ ସରିଆସିଲା ଓ ରାତ୍ରିର ଅନ୍ଧକାର ମାଡ଼ିଆସିଲା । ଅପରିଚିତ ଜଙ୍ଗଲରେ ଜଣେ ବାଟଭୋଇ ପରି ଏଣେ ତେଣେ ବୁଲି ବୁଲି ଶେଷରେ ବାଟ ଧରି ଆଗେଇ ଚାଲିଲେ ।

ଅଦୂରରେ ପୁରୋହିତ ଓ ତାଙ୍କ ସହଯାତ୍ରୀମାନଙ୍କୁ ଦେଖି ଭ୍ଲାଦମିର ଗଛ ଆଢ଼ୁଆଳରେ ଲୁଚିଗଲେ । ତାଙ୍କ ମୁଣ୍ଡକୁ ନାନାପ୍ରକାର ବିଭ୍ରାନ୍ତିକର ଚିନ୍ତା ଗୋଳମାଳ କରିଦେଉଥିଲା । ତେଣୁ ସେମାନେ ଚାଲିଯିବା ପର୍ଯ୍ୟନ୍ତ ସେ ନିଜକୁ ଲୁଚେଇ ରଖିଥିଲେ । ସେମାନେ ମଧ୍ୟ କେହି ଏକଥା ଜାଣିପାରିଲେ ନାହିଁ । ତାଙ୍କୁ ଅତିକ୍ରମ କରି ଚାଲିଯିବା ବେଳେ ସେମାନେ ଖୁବ୍ ଉତ୍ତେଜିତ ହୋଇ କଥାବାର୍ତ୍ତା କରୁଥିଲେ । ପୁରୋହିତ ତାଙ୍କ ସ୍ତ୍ରୀଙ୍କୁ କହୁଥିଲେ—ମୁଁ ତାର ସୁବିଧା କରିବାକୁ ଚାହୁଁଥିଲି । ···ଏଠି ଯଦି କିଛି ହୁଏ, ଆମକୁ କେହି ରକ୍ଷା କରି ପାରିବେ ନାହିଁ ।"

କିନ୍ତୁ ଭ୍ଲାଦମିର୍ ପୁରୋହିତଙ୍କ ସ୍ତ୍ରୀ କଣ କହିଲେ ତାହା ଶୁଣିପାରିଲେ ନାହିଁ ।

ଭ୍ଲାଦମିର ଯାଇ ଘରେ ପହଞ୍ଚିବା ମାତ୍ରକେ ବଗିଚା ଭିତରେ କୃଷକ ଓ ରଯ୍ୟତମାନଙ୍କର ପ୍ରବଳ ଜନସମାଗମ ଦେଖିଲେ । କିଛି ଦୂରରୁ ସେମାନଙ୍କର ଗୋଳମାଳ ଶୁଭୁଥିଲା । ଅଶ୍ୱଶାଳା ସମ୍ମୁଖରେ ଦୁଇଜଣ

ଟ୍ରୋଇକା (ଟ୍ରୋଏକୁରୋଭଙ୍କ ଗ୍ରାମବାସୀ) ଠିଆହୋଇଥିବା ଦେଖିଲେ । ପୋର୍ଟିକୋ ନିକଟରେ ଅନେକ ଅପରିଚିତ ଲୋକ ଠିଆହୋଇ କ'ଣ ଆଲୋଚନା କରୁଥିବା ଦେଖାଗଲା ।

କର୍ମଗୃହୀ ଆଣ୍ଟୋନ ତାଙ୍କୁ ଦେଖି ତାଙ୍କ ନିକଟକୁ ଦୌଡ଼ି ଆସୁଥିବା ସମୟରେ ସେ ପଚାରିଲେ—"କ'ଣ ହୋଇଛି ? ଏମାନେ ସବୁ କିଏ ? କ'ଣ କହୁଚନ୍ତି ?"

ଆଣ୍ଟୋନ କହିଲା—ସାନବାବୁ, ମୁଁ ଭାବୁଛି ଏମାନେ ଜଣ୍ଡା ବାଘ୍ୟାଳୟରୁ ଆସିଛନ୍ତି । ସେମାନେ ତୁମ ପାଖରୁ ଆମକୁ ନେଇଯିବେ ଓ କିରିଲା ଟ୍ରୋଏକୁରୋଭଙ୍କୁ ଦେବେ ।

ଏ ଖବର ଶୁଣି ଆକସ୍ମିକ ଚଳାଭାବରେ ଭ୍ଲାଦମିରର ମୁଣ୍ଡ ତଳକୁ ହୋଇଗଲା । ତା'ର ଲୋକମାନେ ଆସି ଘରପାଖେ ଘେରିଗଲେ । ସମସ୍ତେ ତାଙ୍କୁ କୁଣ୍ଢାଇଧରି କାନ୍ଦ କାନ୍ଦ କହି ଉଠିଲେ, "ଏବେ ତୁମେ ହିଁ ଆମର ବାପ ମା । ଆମେ ଆଉ କୌଣସି ମୁନିବ ଚାହୁଁ ନାହୁଁ । ଆମକୁ କଥା ଦିଅ । ଆମେ ବିଗ୍ରହକଙ୍କର ଏହି କାର୍ଯ୍ୟର ପ୍ରତିବାଦରେ କିଛି ଗୋଟାଏ ବାଟ କରିବୁ । ହଁ, ହଁ, ଆମେ ମରିବୁ ପଛକେ ତୁମକୁ ଛାଡ଼ି ଯାଇ ପାରିବୁ ନାହିଁ ।"

ଭ୍ଲାଦମିର ସେମାନଙ୍କୁ ଚାହିଁବା ମାତ୍ରକେ ତା ମନରେ ଏକପ୍ରକାର ଆଲୋଡ଼ନ ସୃଷ୍ଟି ହେଲା । ସେ ଉତ୍ତେଜିତ ହୋଇ କହିଲା—"ମୁଁ ସେମାନଙ୍କ ପାଖକୁ ଯିବ । ତୁମେମାନେ ଏଠାରେ ଚୁପଚାପ୍ ଠିଆହୁଅ ।"

ସେମାନେ କହିଲେ—"ସାନବାବୁ, ଏ ଅଭଦ୍ରଲୋକଗୁଡ଼ାକୁ ଏଠାରୁ ଶୀଘ୍ର ବିଦା କରିଦେବାକୁ ଚେଷ୍ଟାକର ।"

ଭ୍ଲାଦମିର ସେଇ ସମବେତ ଲୋକମାନଙ୍କ ଆଡ଼କୁ ଗଲା । ମାଜିଷ୍ଟ୍ରେଟ୍ ସାବାସକିନ ସେଠାରେ ଥିଲେ । ସେ ବେଖାତିରଭାବେ ଭ୍ଲାଦମିରକୁ ଚାହିଁଲେ । ସଙ୍ଗେ ସଙ୍ଗେ ଜଣେ ନାଲିମୁହାଁ ଡେଙ୍ଗା ଓ ମୋଟା ପ୍ରାୟ ପଚାଶ ବର୍ଷ ବୟସ୍କ କ୍ୟାପଟେନ୍ ଭ୍ଲାଦମିର ଆଡ଼କୁ ମାଡ଼ିଆସି ରୁକ୍ଷ କଣ୍ଠରେ କହିଲା—"ମୁଁ ଆଉ ଥରେ ତୋତେ କହୁଛି, କୋର୍ଟର

ନସ୍ତମାଲୁସାସ୍କୀ ବୁ କରଲ ପେଟ୍ରୋଭିଚ୍ ଟ୍ରୋଏକୁରୋଭଙ୍କ ଅଧୀନରେ । ହୋଇ ମାଜିଷ୍ଟ୍ରେଟ୍ ଅଛନ୍ତି । ତାଙ୍କ କଥା ତୋତେ ମାନିବାକୁ ହେବ । ସେମାନେ ତୋଠାରୁ ଯଥେଷ୍ଟ ଭଲ ବ୍ୟବହାର ଶିକ୍ଷାକରିଛନ୍ତି ।''

ଏତକ କହିସାରି ଆତ୍ମସନ୍ତୋଷରେ କ୍ୟାପ୍ଟେନ ହୋ ହୋ ହୋଇ ହସିଉଠିଲା ଓ ତା ସହିତ ସମସ୍ତେ ତାଳଦେଇ ହସିବାକୁ ଲାଗିଲେ । ଏ ପ୍ରକାର ବ୍ୟବହାରରେ ଭ୍ଲାଦମିର ଉତ୍‌କ୍ଷିପ୍ତ ହୋଇ କ୍ୟାପଟେନ୍‌କୁ କହିଲା, ''ଏହାର ମାନେ କ'ଣ ?''

କୁଣଲୀ ଅଫିସର ଜଣକ ଚତୁରତାର ସହିତ କହିଲା—''ଆମେମାନେ କରଲ ପେଟ୍ରୋଭିଚ୍ ଟ୍ରୋଏକୁରୋଭଙ୍କ ତରଫରୁ ଲୋକମାନଙ୍କୁ ବୁଝାଇ-ଦେବାକୁ ଆସିଛୁ ।''

ଭ୍ଲାଦମିର କହିଲା—''ଆପଣ ବୋଧେ ମୋ ଲୋକମାନଙ୍କ ଆଗରେ ମୋର ମାଲିକାନା ସତ୍ତ୍ୱ ବାଜ୍ୟାପ୍ତି ବିଷୟରେ କହୁଥିଲେ ।''

ଯାବାସକନ ତାଛଲ୍ୟ ସ୍ୱରରେ ଗୁହିଁ କହିଲେ, ''ତୁମେ ଯେ କିଏ ସେଥିରେ ମୋର କ'ଣ ଅଛି ? ମୁଁ ଜମିଦାର ଆଣ୍ଡ୍ରେ ଗାଭ୍ରିଲ ଡୁବ୍ରୋଭସ୍କିଙ୍କ ପୁଅ ବିଷୟରେ କହୁଛି । ଈଶ୍ୱରଙ୍କ କୃପାରୁ ଡୁବ୍ରୋଭସ୍କିଙ୍କର ମୃତ୍ୟୁ ହୋଇଛି । ତୁମେ କିଏ ଓ କ'ଣ ସେ ବିଷୟରେ ମୋର ଜାଣିବା କିଛି ଆବଶ୍ୟକ ନାହିଁ ।''

''ଏ ହେଉଛନ୍ତି ଆମର ଯାନ ମୁନିବ—ଭ୍ଲାଦମିର ଆଣ୍ଡ୍ରେଭିଚ୍ ।'' —ଉପସ୍ଥିତଜନତାଙ୍କ ଭିତରୁ ଶବ୍ଦ ଭାସିଆସିଲା ।

ପୋଲିସ କ୍ୟାପଟେନ୍ ଗର୍ଜିଉଠିଲେ—''କାହାର ଏତେ ଦୂର ସାହସ ହେଲଣି ? ତୁମ ମୁନିବ ? ଭ୍ଲାଦମିର ଆଣ୍ଡ୍ରେଭିଚ୍ କିଏ ? କିରଲା ପେଟ୍ରୋଭିଚ୍ ଟ୍ରୋଏକୁରୋଭ୍ ତୁମ ମୁନିବ । ବୋକାଗୁଡ଼ାକଙ୍କରେ ?''

—''ନା, ନା, ସେ ନୁହେଁ ।''

ପୋଲିସ କ୍ୟାପ୍‌ଟେନ୍ ଚିତ୍କାର କରି କହିଲେ—''ଗାଁ ମୁଖିଆ ଏଆଡ଼େ ଆସ । ସେ ବଦ୍‌ମାସ୍‌କୁ ଧରିଆଣ । ମୋ କଥାରେ କିଏ ଉତ୍ତର ଦେଉଥିଲା, ମୁଁ ତାକୁ ଦେଖେ !''

କଥାଟା ଜାଣିବା ପାଇଁ ଗାଁ ମୁଖିଆ ଉପସ୍ଥିତ ଜନତାଙ୍କ ମଧ୍ୟକୁ ପଶିଗଲେ । କିନ୍ତୁ କେହି କଣେହେଲେ ମାନିଲେ ନାହିଁ । ହଠାତ୍ ପୃଷ୍ଠ ଭାଗରୁ ଏକ ମୃଦୁ ଗୁଞ୍ଜରଣ ଶୁଭିଲା । ତାହା କ୍ରମେ ବଢ଼ିବାକୁ ଲାଗିଲା ଏବଂ ଅଳ୍ପ କେତୋଟି ମୁହୂର୍ତ୍ତରେ ଦୃଢ଼ ପ୍ରତିବାଦର ସ୍ୱର ଗଗନପବନକୁ ମୁଖରିତ କରିଦେଲା । ପୋଲିସ କ୍ୟାପଟେନ୍‌ର ସ୍ୱର କ୍ରମେ ନରମି ଆସିଲା ଓ ସେ ଲୋକମାନଙ୍କୁ ପ୍ରଲୋଭି... କରିବାକୁ ଚେଷ୍ଟାକଲା ।

ଉପସ୍ଥିତ ଲୋକମାନେ ଆଗେଇ ଚାଲିଲେ । ସାବାସକିନ ଓ ତାଙ୍କ କର୍ମଚାରୀମାନେ ବିଚଳିତ ହୋଇଉଠିଲେ ଓ ଘରେ ତାଲା ପକାଇ-ଦେଲେ ।

"ଏମାନଙ୍କୁ ବାନ୍ଧିପକାଅ ।"—ତୀବ୍ର ଚିତ୍କାର କରି କରି ଲୋକେ ଆଗକୁ ଆଗକୁ ମାଡ଼ି ଚାଲିଲେ ।

ଭ୍ଲାଦମିର୍ ଡୁବ୍ରୋଭସ୍କି ଚିତ୍କାର କରି ଉଠିଲେ । —"ବନ୍ଦ କର । ଏ ତୁମେ କ'ଣ କରୁଛ ? ବୋକାଗୁଡ଼ାକ—ନିଜକୁ ନିଜେ ନଷ୍ଟ କରୁଛ ? ତା ସହିତ ମୋତେ ବି ! ଘରକୁ ଫେରିଯାଅ । ମୋତେ ଟିକେ ଏକୁଟିଆ ରହିବାକୁ ଦିଅ । ଡର ନାହିଁ । ଆମ ଶାସକ ଜାର୍ ବଡ଼ ଦୟାଳୁ । ଆମେ ତାଙ୍କୁ କହିବା । ସେ ଏଭଳି ଅନ୍ୟାୟ ବିଚାର କେବେ କରିବେ ନାହିଁ ।"

ଭ୍ଲାଦମିରର କଥା ଶୁଣି ଲୋକମାନେ ନୀରବ ହୋଇ ନିଜନିଜର ଘରକୁ ଚାଲିଗଲେ । ତାପରେ ସାବାସକିନ ଦ୍ୱାର ଖୋଲି ଭ୍ଲାଦମିରକୁ ଧନ୍ୟବାଦ ଜଣାଇଲେ । ଭ୍ଲାଦମିର ଧୈର୍ଯ୍ୟର ସହିତ ତାଙ୍କଠାରୁ ସବୁ ଶୁଣିଲା—କିନ୍ତୁ କିଛି ଉତ୍ତର ଦେଲାନାହିଁ । ସାବାସ୍‌କିନ କହିଲେ—ଆମେମାନେ ଆପଣଙ୍କୁ ଆଜି ରାତିଟା ଏଇଠି କଟାଇଦେଇ କାଲି ପ୍ରଭାତରେ ଚାଲିଯିବୁ । ବାଟରେ କାଳେ ଆପଣଙ୍କ ଲୋକମାନେ ଆମକୁ ଆକ୍ରମଣ କରିବେ ? ଆମେ ଏଠାରେ ରହିପାରିବୁ ତ ?"

"ଆପଣମାନଙ୍କର ଯେମିତି ଇଚ୍ଛା ।"—ଶାନ୍ତ ନମ୍ର ଭାବରେ ଭ୍ଲାଦମିର କହିଲା—"ମୁଁ ତ ଏଠିକାର ମୁନିବ ନୁହେଁ ।"

ଏତିକି କହିସାରି ଭ୍ଲାଦମିର ତା' ବାପାଙ୍କ କୋଠରି ଭିତରକୁ ପଶି ଯାଇଥିଲା ।

# ଷଷ୍ଠ ଅଧ୍ୟାୟ

ଭ୍ଲାଦମିର୍ ମନକୁ ମନ କହିଲେ—"ସବୁ ସରିଗଲା । ମୁଣ୍ଡ ଉପରେ ଚନ୍ଦ୍ରାର ପାହାଡ଼ ଲଦିହୋଇଗଲା । ଏଇ ଘରେ ମୁଁ ଜନ୍ମହୋଇଥିଲି । ଏଇଠି ମୋ ବାପାଙ୍କର ମୃତ୍ୟୁ ହେଲା । କାଲିଠାରୁ ଏଇ ଘର ଆଉ ଆମର ହୋଇ ରହିବ ନାହିଁ । ଯାହା ପାଇଁ ମୋ ବାପାଙ୍କର ମୃତ୍ୟୁ ହେଲା—ସେହି ଶତ୍ରୁ ହାତକୁ ଚାଲିଯିବ ।" ସେ ଚମକିତ ଭାବରେ ତାଙ୍କ ମାଆର ତୈଳଚିତ୍ରକୁ ଗ୍ୱହିଁଲେ । ଚିତ୍ରକର ତାଙ୍କ ଶରୀରକୁ ଧବଳରଙ୍ଗରେ ଓ କେଶଗୁଚ୍ଛକୁ ସୁନ୍ଦର ରେଶମୀ ରଙ୍ଗରେ ଅଙ୍କନ କରିଛି । "ଏଇ ମୋ ମା'ର ଚିତ୍ର—କାଲିଠାରୁ ତାଙ୍କ ହାତରେ ପଡ଼ିବ । ଭଙ୍ଗା ଚେଆର୍ ପ୍ରଭୃତିକୁ ଅଯତ୍ନରେ ରଖାଗଲା ପରି ଏହି ଫଟୋକୁ ଅନାବଶ୍ୟକ ଜିନିଷ ସହିତ ରଖାଯିବ । ବାପାଙ୍କର ଏଇ ଶୋଇବାଘର ହାରେମ୍‌ରେ ପରିଣତ ହେବ । ଦୁଃଖ ସୁଖର ଏଇ ଘର ତାଙ୍କର କେବେ ବି ବେଦଖଲ ହୋଇ-ପାରିବ ନାହିଁ ।"

ଭ୍ଲାଦମିର୍ ଆଇରନ ଚେଷ୍ଟ ଓ ଡ୍ରଆରର ସବୁ କାଗଜଗୁଡ଼ିକ ତନ୍ନତନ୍ନ କରି ଦେଖିଲା । ସେ ସବୁ ଥିଲା ଘରୋଇ ହିସାବ ଓ ବ୍ୟବସାୟିକ କାଗଜପତ୍ର । ସେ ସେଗୁଡ଼ିକ ପ୍ରତି ଦୃଷ୍ଟି ନଦେଇ ଚିରିପକାଇଲେ । ତା' ଭିତରୁ ସେ ଗୋଟେ ପ୍ୟାକେଟ୍ କାଗଜ ପାଇଲେ । ତା ଉପରେ 'ମୋ ସ୍ତ୍ରୀର ଚିଠି' ବୋଲି ଲେଖାଥିଲା । ଭ୍ଲାଦମିର୍ ସେଗୁଡ଼ିକୁ ବେଶ୍ ଭାବପ୍ରବଣ ଭାବରେ ପଢ଼ିବାକୁ ଆରମ୍ଭକଲେ । ତା' ବାପା ସୈନ୍ୟବାହିନୀରେ ଥିବା ସମୟରେ ମା ଗ୍ରାମରୁ ସେ ଚିଠିଗୁଡ଼ିକ ଲେଖିଥିଲେ । ସେହି ଚିଠି-ଗୁଡ଼ିକରେ ତାଙ୍କର ଛୋଟିଆ ଜୀବନ, ପାରିବାରିକ ଘଟଣା ଓ ଶିଶୁ ଭ୍ଲାଦମିର୍‌ର ସୁଦୀର୍ଘ ଓ ସୁନ୍ଦର ଭବିଷ୍ୟତ ବିଷୟରେ ଲେଖାଥିଲା । ଭ୍ଲାଦମିର୍ ଯେତେବେଳେ ନିଜକୁ ସେଥିରେ ମଜ୍ଜାଇଦେଇଥିଲେ, ଠିକ୍ ସେତିକିବେଳେ ଘଣ୍ଟାରେ ଏଗାରଟା ବାଜିଲା । ହାତରେ ମହମବତି ଧରି ଓ ଚିଠିଗୁଡ଼ିକୁ ପକେଟରେ ପୂରାଇ ସେ କୋଠରୀ ବାହାରକୁ ବାହାରିଲେ ।

ସେତେବେଳକୁ ଭୋଜନଶାଳାର ଚଟାଣରେ କର୍ମଚାରୀମାନେ ଅଘୋର ନିଦରେ ଶୋଇପଡ଼ିଥିଲେ । ଟେବୁଲ ଉପରେ କାଚଗ୍ଲାସଗୁଡ଼ିକ ରଖା-ଯାଇଥିଲା । ସାରା ଘରଟି ,ରମ୍‌ର ବାସନାରେ ଭରପୂର ଥିଲା । ଭ୍ଲାଦମିର୍ ବିରକ୍ତିଭରା ମନରେ ସେମାନଙ୍କୁ ଅତିକ୍ରମ କରିଗଲେ । ଦ୍ୱାରରେ ତାଲା ଝୁଲୁଥିବା ଦେଖି ସେ ଚାବିପାଇଁ ପୁନର୍ବାର ଭୋଜନଶାଳା ନିକଟକୁ ଫେରିଆସିଲେ । ଟେବୁଲରୁ ଚାବି ଆଣିବା ପାଇଁ ଯିବା ସମୟରେ ଘର କୋଣରେ ଟାଙ୍ଗିଆ ଧରି ଲୁଚିଥିବା ଜଣେ ଲୋକକୁ ସେ ଦେଖିଲେ । ମଦ୍ଧମବତି ଆଲୁଅରେ ସେ ବଣିଆ ଆରକ୍‌ହିପ୍‌କୁ ଚିହ୍ନିପାରିଲେ । ସେ ପଚାରିଲେ—"ତୁମେ ଏଠି କ'ଣ କରୁଛ ?"

"ଓଃ ! ତୁମେ, ଭ୍ଲାଦମିର୍ ! ଭଗବାନ୍ ତୁମକୁ ରକ୍ଷାକଲେ । ଭଲ କରିଛ ବଢ଼ଟି ଆସିଛ ।"

ଭ୍ଲାଦମିର୍ ତା'ର ଧୀର କଥା ଶୁଣି ତାକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ସେ କହିଲା—"ମୁଁ କାହିଁକି ଲୁଚିଥିଲି ? ମୁଁ ଚାହୁଁଥିଲି—ମୁଁ ଆସିଥିଲି···"

—"ଟାଙ୍ଗିଆ କାହିଁକି ଆଣିଥିଲ ?"

—"ଟାଙ୍ଗିଆ ? ବର୍ତ୍ତମାନ ସମୟରେ ଏକୁଟିଆ କୁଆଡ଼େ ଯିବା କଣ ଉଚିତ ! ଦେଖ, ଏ ପାଜିଗୁଡ଼ାକ କିପରି ଶୋଇଛନ୍ତି । ତୁମେ ଜାଣନାହିଁ ଏ ବଦ୍‌ମାସ୍‌ଗୁଡ଼ାକ ତୁମପାଇଁ କ'ଣ କରିଛନ୍ତି ।"

—"ତୁ ବହୁତ ମଦ ପିଇଦେଇଛୁ । ମୋତେ ସେଗାଟା ଦେଇଦେ । ଯା' ଶୋଇପଡ଼ ।"

"ପିଇଛି···ମୁଁ ? ପ୍ରଭୁ ଜାଣନ୍ତି···ମୁଁ ଢୋକେ ବି ପିଇନାହିଁ । ଯେଉଁ ବଦ୍‌ମାସ୍ ପାଜିଗୁଡ଼ାକ ମୋ ମାଲିକଙ୍କୁ ତାଙ୍କ ପୈତୃକ ଘରୁ ତଡ଼ିଦେବାକୁ ଆସିଛନ୍ତି, ସେଇମାନଙ୍କଠାରୁ··· ଦେଖ ! ସେମାନେ କେମିତି ଘୁଙ୍ଗୁଡ଼ି ମାରୁଛନ୍ତି । ସେମାନଙ୍କୁ ବାବୁ ଅଭିଶାପ ଦିଅ । ଆମେ ଏମାନଙ୍କୁ ସବୁଦିନ ପାଇଁ ସାଫ୍ କରିଦେବୁ ।"

ଭ୍ଲାଦମିର୍ ରାଗିଯାଇ କହିଲେ—"ଆରକ୍‌ହିପ୍, ଶୁଣ, କର୍ମଚାରୀମାନଙ୍କର କି ଦୋଷ ! ଲଣ୍ଠନ ଲଗାଅ ଓ ମୋ ପଛରେ ଆସ ।"

ଆରକ୍‌ହ୍ୱପ୍ ତା' ମାଲିକ ହାତରୁ ବଣ୍ଡିଟି ନେଇ ଲଣ୍ଠନଟି ଆଣି ଲଗାଇଲା । ଲମ୍ବାଲମ୍ବା ପାହୁଣ୍ଡ ପକାଇ ଦୁହେଁ ଖୁବ୍ ଧୀରେ ବଗିଚା ଭିତରକୁ ଗଲେ । ସ୍ତୁଟି ଜଗାଳି ଠନ୍ କରି ଥରେ ପିଟିଦେବା ମାତ୍ରେ କୁକୁରଗୁଡ଼ାକ ଭୁକିଉଠିଲେ ।

ଭ୍ଲାଦମିର୍ ଓ ଆରକ୍‌ହ୍ୱପ୍ ତାଙ୍କର ଲୋକମାନଙ୍କୁ ସବୁ ସମସ୍ତ ଜିନିଷ ନେଇ ପଳାଇ ଆସିବାପାଇଁ ନିର୍ଦ୍ଦେଶ ଦେଲେ । ସେମାନେ ଚାଲିଆସିବା ପରେ କର୍ମଚାରୀମାନେ ଶୋଇଥିବା ଘରର ଦରଜାରେ ତାଲା ପକାଇଦେଲେ ଓ ତା'ପରେ ଘରେ ନିଆଁ ଲଗାଇଦେଲେ ।

ନିଆଁ ଜଳିବା ସହିତ ପବନ ବହିବାକୁ ଆରମ୍ଭ କଲା । ଆସ୍ତେ ଆସ୍ତେ ସବୁ ଘରଗୁଡ଼ିକରେ ନିଆଁ ଲାଗିଗଲା । ନିଆଁ ହୁରୁହୁରୁ ହୋଇ ଜଳି-ଉଠିଲା । ଘର ଭିତରେ ଆବଦ୍ଧ ଥିବା ଲୋକମାନଙ୍କର କରୁଣ ଚିତ୍କାର ଗଗନପବନକୁ ପ୍ରକମ୍ପିତ କରିଦେଲା—"ଆମେ ପୋଡ଼ିଗଲୁ, ରକ୍ଷାକର, ରକ୍ଷାକର !"

ଆରକ୍‌ହ୍ୱପ୍ ନିଷ୍ଠୁର ଭାବେ ହସିହସି ସେମାନଙ୍କୁ କହିଲା, "ନାଁ, କମା ନୁହେଁ ।"

ସେ କରୁଣ ଓ ହୃଦବିଦାରକ ଦୃଶ୍ୟ ଦେଖି ନବ ଯୁଗୋସ୍ରୋଭନା ଆରକ୍‌ହ୍ୱପ୍‌କୁ କହିଲା—"ହେ ପୁଅ, ଯା ସେମାନଙ୍କୁ ରକ୍ଷାକର । ଈଶ୍ୱର ତୁମର ଭଲ କରିବେ ।"

ଏପରି କଥୋପକଥନ ଚାଲିଥିବା ସମୟରେ କର୍ମଚାରୀମାନେ ଝରକା ଭାଙ୍ଗି ପଦାକୁ ଆସିବାକୁ ଚେଷ୍ଟାକରୁଥିଲେ । ହଠାତ୍ ଘରର ଜଳନ୍ତା ଛାତଟା ସେମାନଙ୍କ ଉପରେ ଭୁସୁଡ଼ିପଡ଼ିଲା । ତା' ପରଠାରୁ ଆଉ କାହାରି ଚିତ୍କାର ଶୁଭିଲା ନାହିଁ । ସେ ସମୟରେ ଘରର ସମସ୍ତ କର୍ମଚାରୀ ବଗିଚାରେ ଠିଆହୋଇ ଜଳୁଥିବା ଘରକୁ ଚାହିଁଥିଲେ ।

ଅଗ୍ନିର ସର୍ବଗ୍ରାସୀ ଲେଲିହାନ ଶିଖା ଭିତରେ ବିଲେଇଟିଏ ଡେଉଁ-ଥିବାର ଆରକ୍‌ହ୍ୱପ୍ ଦେଖିଲା । ପିଲାମାନେ ତାକୁ ଦେଖି ତାଳିମାରି ନାଚୁଥିବା ଦେଖି ସେ ଭୟଙ୍କର ରାଗିଗଲା ଏବଂ ନିଆଁକୁ ଖାତିରି

ନିକଟ ବଲେଇଟିକୁ ଉଦ୍ଧାର କରି ଆଣିଲା । ତା'ର ବିଶ୍ୱାସ – ପ୍ରଭୁଙ୍କ ପ୍ରିୟ ଜୀବଟିର ଜୀବନରକ୍ଷା କଲେ ପ୍ରଭୁ ନିଶ୍ଚୟ ତା' ଉପରେ ସନ୍ତୁଷ୍ଟ ହେବେ । ସେ ବଲେଇଟିକୁ ବହୁ କଷ୍ଟରେ ଉଦ୍ଧାର କଲା ସତ—କିନ୍ତୁ ନିଜ ଦେହର ଅନେକ ଅଂଶ ନିଆଁ ଧାସରେ ପୋଡ଼ିଯାଇଥିଲା । ସେ ଘରର ସବୁ ପରିଚାରକ ଓ ପରିଚାରିକାମାନଙ୍କୁ ବିଦାୟ ଜଣାଇ କହିଲା— "ବନ୍ଧୁମାନେ ବିଦାୟ । ମୋର ଆଉ କିଛି କାମ ନାହିଁ । ଏଥର ଚାଲିଲି । ଯଦି କିଛି ଦୋଷକରିଥାଏ କ୍ଷମାଦେବ ।"

ସେ ବିଦାୟ ନେଇ ଚାଲିଗଲା । ନିଆଁ ଜଳଜଳ ପାଉଁଶ ସ୍ତୂପରେ ପରିଣତ ହେଲା । ଗୃହଶୂନ୍ୟ ଭ୍ଲାଦମିର୍‌ଙ୍କର ଲୋକମାନେ ତାଙ୍କୁ ଘେରି ଠିଆହୋଇଥାନ୍ତି ।

# ସପ୍ତମ ଅଧ୍ୟାୟ

ତା' ପରଦିନ—ଘରପୋଡ଼ି ଖବର ଜିଲ୍ଲାସାରା ବ୍ୟାପିଗଲା । ଲୋକମାନେ ବିଭିନ୍ନ କଥା କହିଲେ । ସେମାନଙ୍କ ମଧ୍ୟରୁ କେତେକ କହିଲେ ଯେ ଡୁବ୍ରୋଭସ୍କିର ଲୋକମାନେ ମଦଭୋଜିରେ ଅତ୍ୟଧିକ ପିଇଦେଇ ଦାୟିତ୍ୱହୀନ ଭାବେ ଏହା ଘଟାଇଥିବା ସମ୍ଭବ । ଅନ୍ୟ କେତେକ ଭାବିଲେ ଏହା କିରାଣୀମାନଙ୍କ କାମ । ଆଉରି ଥୋକେ କହିବୁଲିଲେ କୌଣସି ଦୁର୍ଘଟଣାବଶତଃ ଏ ଅଗ୍ନିକାଣ୍ଡ ଘଟିଛି । ଡୁବ୍ରୋଭସ୍କିଙ୍କୁ ବି କେତେକ ଲୋକ ଏଥିପାଇଁ ଦାୟୀ କରୁଥିଲେ । ଦିନକ ପରେ କରିଲା ଟୋଏକରୋଭ ସଦଳବଳେ ସେ ସ୍ଥାନ ଦେଖିବାକୁ ଗଲେ ।

ପୋଲିସ କ୍ୟାପଟେନ୍, ମାଜିଷ୍ଟ୍ରେଟ୍, ଆଟର୍ଣ୍ଣି ଜେନେରାଲ୍, କିରାଣୀଦଳ, ଭ୍ଲାଦମିର୍ ଓ ତାଙ୍କ ନର୍ସ ୟୁଗୋରୋଭନା, ପୁରୁଷ ପରିଚାରକ ଗ୍ରିସା, ଗାଡ଼ିବାଲା ଆଣ୍ଟୋନ ଏବଂ ବଣିଆ ଆର୍‌କିହିପ୍ ପ୍ରଭୃତଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । କିରାଣୀଦଳ ପୋଡ଼ିଯାଇଥିବା ଖବର ଲୋକଙ୍କ

ଠାରୁ ଶୁଣିଲେ । ଡୁବ୍ରୋଭସ୍କିର ପରିଚାରିକା ଭସିଲିସା ଓ ଲୁକେର୍ୟା ନିଆଁ ବ୍ୟାପିବା ପୂର୍ବରୁ ଡୁବ୍ରୋଭସ୍କି ଓ ଆର୍କିପ୍‌କୁ ଦେଖିଥିଲେ ବୋଲି କହିଲେ । ତେଣୁ ସେ ଦୁଇଜଣଙ୍କ ଉପରେ ସମସ୍ତଙ୍କର ସନ୍ଦେହ ଘନୀଭୂତ ହେଲା । କିରିଲା ପେଟ୍ରୋଭିଚ୍ ନିଜେ ସମସ୍ତ ଘଟଣା ଅନୁସନ୍ଧାନ କଲାପରେ ସଠିକ୍ ବିବରଣୀ ଲିଖିତ ଆକାରରେ ଗଭର୍ଣ୍ଣରଙ୍କୁ ଜଣାଇଦେଲେ । ତାପରେ କେସ୍ ଆରମ୍ଭ ହେଲା ।

× × ×

ହଠାତ୍ ଦିନେ ଡକାୟତଙ୍କର କାର୍ଯ୍ୟକଳାପରେ ପାଖପଡ଼ିଶା ଅଞ୍ଚଳ ବାସୀମାନେ ଆତଙ୍କିତ ହୋଇପଡ଼ିଲେ । ସରକାରଙ୍କ ପ୍ରତିରୋଧ ସତ୍ତ୍ୱେ ଗୋଟିକ ପରେ ଗୋଟିଏ ଡକାୟତି ସଫଳଭାବେ ସେମାନେ କରି ଚାଲିଲେ । ବାଟଘାଟରେ ଗ୍ରାମବାସୀଙ୍କ ଜୀବନର ନିରାପତ୍ତା ରହିଲା ନାହିଁ । ସ୍ପଷ୍ଟ ଦିବାଲୋକରେ ଡକାୟତମାନେ ଜମିଦାରମାନଙ୍କର ଘରେ ପଶି ଧନସମ୍ପଦ ବୋହିନେଲେ । ସେମାନଙ୍କର ଦଳ କ୍ରମେ ଜଣାଶୁଣା ହୋଇଉଠିଲା । ଡୁବ୍ରୋଭସ୍କି ଏମାନଙ୍କର ଦଳପତି ବୋଲି ସମସ୍ତେ କହିବାକୁ ଲାଗିଲେ । ତେବେ ଅତି ଆଶ୍ଚର୍ଯ୍ୟ ଘଟଣା ଯେ କିରିଲା ଟ୍ରୋଏକରୋଭଙ୍କ ଜମିଦାରୀରୁ ସାମାନ୍ୟ ଜିନିଷଟିଏ ବି ଚୋରି ହେଉ- ନଥିଲା । ତେଣୁ ସେ ଡୁବ୍ରୋଭସ୍କିକୁ ପ୍ରଶଂସା କରୁଥିଲେ । ତାଙ୍କର ଏଭଳି ପ୍ରଶଂସା ଶୁଣି ପଡ଼ୋଶୀ ଜମିଦାରମାନେ ତାଙ୍କୁ ପରୋକ୍ଷରେ ଥଟ୍ଟା- କରୁଥିଲେ । ସେ ଯାହାହେଉନା କାହିଁକି, ଡୁବ୍ରୋଭସ୍କି ଗରିବଲୋକ- ମାନଙ୍କ ପ୍ରତି ସଦୟ ଥିଲେ । ସରକାରଙ୍କର ସମସ୍ତ କଠୋର ବ୍ୟବସ୍ଥା ସତ୍ତ୍ୱେ ଡୁବ୍ରୋଭସ୍କି ତାଙ୍କ କାମ ଖୁବ୍ ସୁନ୍ଦରଭାବେ କରିଚାଲିଥିଲେ ।

ଅକ୍ଟୋବର ସକାଳ—କିରିଲା ଟ୍ରୋଏକରୋଭଙ୍କ ଗ୍ରାମକୁ ଜଣେ ସାଧୁ ଆସିଲେ, ତେଣୁ ଏକ ଉତ୍ସବର ଆୟୋଜନ ଚାଲିଲା । ଆମେ ଆମର ପାଠକମାନଙ୍କୁ କେତେକ ଘଟଣା ବିଷୟରେ ଏଠାରେ ଅବଗତ କରାଇବୁ । କାରଣ ଏହିଠାରେ ତ ଆମର ପ୍ରକୃତ ଗପର ଆରମ୍ଭ ।

# ଅଷ୍ଟମ ଅଧ୍ୟାୟ

କିରିଲ୍ ପେଟ୍ରୋଭିଚ୍‌ଙ୍କ ଝିଅ ମାଶା ଯେ କି ଆମ ଗଳ୍ପର ନାୟିକା, ତାହାର ବିଷୟରେ ଯେ କୁହାଯିବ ଏ କଥା ପାଠକେ ଅନୁମାନ କରି-ପାରିବେଣି । ଗଳ୍ପ ଆରମ୍ଭ ହେଲାବେଳକୁ ସେ ସତରବର୍ଷୀୟା ପୂର୍ଣ୍ଣଯୌବନା । ତା' ବାପାଙ୍କର ଖାମଖିଆଲି ବ୍ୟବହାରରେ ମାଶା ପ୍ରାୟ ଅଧିକାଂଶ ସମୟ ନୀରବ ରହୁଥିଲା । ସେ ଉପଯୁକ୍ତ ବ୍ୟବହାର ଶିକ୍ଷା କରିପାରୁ ନଥିଲା । ତା'ର କେହି ସଙ୍ଗିନୀ ନଥିଲେ—ତେଣୁ ସେ ନିଃସଙ୍ଗତା ମଧ୍ୟରେ ବଢ଼ିଉଠିଲା । ପଡ଼ୋଶୀ ଘରର ଝିଅ ଓ ବୋହୂମାନେ ସମୟେ ସମୟେ କିରିଲ୍ ପେଟ୍ରୋଭିଚ୍‌ଙ୍କ ନିକଟକୁ ଆସୁଥିଲେ । ହସଖୁସି ଓ କୌତୁକ ଆସର ପୁରୁଷମାନଙ୍କ ମଧ୍ୟରେ ବେଶ୍ ଜମିଉଠୁଥିଲା, କିନ୍ତୁ ସେଠାରେ କୌଣସି ସ୍ତ୍ରୀଲୋକ ସେ ସମୟରେ ଉପସ୍ଥିତ ରହୁନଥିଲେ ।

ଏଇ ସୁନ୍ଦରୀ ତରୁଣୀ ମାଶା ବାପା କିରିଲ୍ ପେଟ୍ରୋଭିଚ୍‌ଙ୍କ ସହିତ କ୍ୱଚିତ୍ ଭୋଜିସଭାକୁ ଆସୁଥିଲା । ଅଷ୍ଟାଦଶ ଶତାବ୍ଦୀର ଫରାସୀ ଲେଖକମାନଙ୍କର ଏକ ବିରାଟ ପୁସ୍ତକାଳୟ ତା' ତତ୍ତ୍ୱାବଧାନରେ ଥିଲା । ତା' ବାପା ସେଥିରୁ ଖଣ୍ଡିଏ ହେଲେ ବହି ପଢ଼ୁନଥିଲେ କିମ୍ବା ଭଲ ବହି ବାଛି ଝିଅକୁ ପଢ଼ିବାକୁ କହୁନଥିଲେ । ତେଣୁ ତାଙ୍କ ଝିଅ ମାଶା ସବୁ ବହି ପଢ଼ୁଥିଲା ଏବଂ ନଭେଲଗୁଡ଼ିକ ଅଧିକ ଆଗ୍ରହରେ ପଢ଼ୁଥିଲା । ଏହି କାର୍ଯ୍ୟ ପାଇଁ ସେ ତାର ପରିଚାରିକା ମୋସେଲ୍ ମିମିଙ୍କ ସାହାଯ୍ୟ ପାଇଥିଲା । କିରିଲ୍ ପେଟ୍ରୋଭିଚ୍‌ଙ୍କର ତା' ଉପରେ ପ୍ରଗାଢ଼ ବିଶ୍ୱାସ ଥିଲା । କେତେକ ଅନିବାର୍ଯ୍ୟ କାରଣ ଯୋଗୁ ମିମିଙ୍କୁ ସେ ସ୍ଥାନ ତ୍ୟାଗ କରିବାକୁ ହେଲା । ସେ ଦୂରକୁ ଚାଲିଗଲେ ସତ, କିନ୍ତୁ ପେଟ୍ରୋଭିଚ୍‌ଙ୍କ ଝିଅ ମାଶାର ଅନ୍ତରର ନିଭୃତ କୋଣରେ ଏକାନ୍ତ ଆପଣାର ହୋଇ ରହିଗଲେ ।

କିରିଲ୍ ପେଟ୍ରୋଭିଚ୍ ସେହି ସମୟରେ ମାଶାକୁ ଫରାସୀ ଭାଷା ଶିକ୍ଷା-ଦେବାପାଇଁ ମସ୍କୋରୁ ଜଣେ ଗୃହଶିକ୍ଷକ ପାଇଥିଲେ । ଏଇ ଗୃହଶିକ୍ଷକଙ୍କର କମନୀୟକାନ୍ତିଯୁକ୍ତ ସ୍ୱାସ୍ଥ୍ୟ ଓ ବିନମ୍ର ବ୍ୟବହାର କିରିଲ୍ ପେଟ୍ରୋଭିଚ୍‌ଙ୍କୁ

ସନ୍ତୁଷ୍ଟ କରିପାରିଥିଲା । ସେ ଯେ ତାଙ୍କର ଜଣେ ଆତ୍ମୀୟଙ୍କ ଘରେ ଦୁଇବର୍ଷ ରହିଥିଲେ, ତାହାର ପ୍ରମାଣ ତାଙ୍କୁ ଦେଇପାରିଥିଲେ । ଏତେ ଜ୍ଞାନ ଓ ସୁନ୍ଦର ସ୍ୱାସ୍ଥ୍ୟ ସତ୍ତ୍ୱେ ସେ ଯେ କାହିଁକି ଗୃହଶିକ୍ଷକତା କରୁଥିଲେ, ସେଥିନେଇ କିରିଲଙ୍କୁ କିଛି ବିସ୍ମୟ ଲାଗୁଥିଲା । ଏହି କାରଣରୁ ସେ ମାଶାକୁ ଡକାଇପଠାଇଲେ । ଅନ୍ୟପକ୍ଷରେ ଦେଖିବାକୁ ଗଲେ ତାଙ୍କୁ ଫ୍ରେଞ୍ଚ୍ ଭାଷା କହିଆସୁନଥିଲା । ତେଣୁ ସେ ମାଶାକୁ ଦ୍ୱିଭାଷୀ ଭାବେ ପାଖରେ ରଖିଥିଲେ ।

କିରିଲ ଝିଅ ମାଶାକୁ କହିଲେ—ସେ ଭଦ୍ରବ୍ୟକ୍ତିଙ୍କୁ କହିଦେ ମୁଁ ତାକୁ କାର୍ଯ୍ୟରେ ରଖିବି—କେବଳ ଗୋଟିଏ ସର୍ତ୍ତରେ—ସେ ମୋ ଶିକ୍ଷକ ସେ କୁକୁରଟାର ସୁଅ ସହିତ କୌଣସି ସମ୍ପର୍କ ରଖିବ ନାହିଁ ।

ମାଶା ଯୁବକଙ୍କୁ ସମ୍ମାନ ଜଣାଇ କହିଲା ଯେ ତାଙ୍କର ଅମାୟିକ ବ୍ୟବହାରରେ ମାଲିକ ବେଶ୍ ସନ୍ତୁଷ୍ଟ । ତାହାପରେ ତା ବାପାଙ୍କର ସର୍ତ୍ତ ଜଣାଇଦେଲା ।

ଫ୍ରେଞ୍ଚ ଯୁବକ ଜଣକ ନତମସ୍ତକରେ କହିଲେ ଯେ ସେ ତାଙ୍କଠାରୁ ଉପଯୁକ୍ତ ସମ୍ମାନ ପାଇବେ ବୋଲି ଆଶାକରନ୍ତି ।

ମାଶା ଅବିକଳ ଭାବରେ କଥାଟି ତା' ବାପାଙ୍କୁ ଜଣାଇଦେଲା । କିରିଲ ପେଟ୍ରୋଭିଚ୍ କହିଲେ, "ଭଲକଥା । ତାଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି, ମାଶାକୁ ବ୍ୟାକରଣ ଓ ଭୂଗୋଳ ବିଷୟରେ ଉତ୍ତମ ଶିକ୍ଷା ଦେବା ।"

ତା'ପରେ ତାଙ୍କର ରହିବା ପାଇଁ ଉଦ୍ଦିଷ୍ଟ ଗୃହ ତାଙ୍କୁ ଦେଖାଇ-ଦିଆଯାଇଥିଲା । ମାଶା ସେହି ଫ୍ରେଞ୍ଚ ଯୁବକଙ୍କ ଉପରେ କୌଣସି ଗୁରୁତ୍ୱ ନଦେଇ ଦାମ୍ଭିକତାର ସହିତ ସେଠାରୁ ଚାଲିଗଲା । ତା' ଚକ୍ଷୁରେ ଶିକ୍ଷକ, କଳାକାର ଓ ପରିଚାରକ ସମାନ ଥିଲେ । ସେ ସେମାନଙ୍କୁ ଅତି ହେୟ, ଚକ୍ଷୁରେ ଦେଖୁଥିଲା । ତାହାପରଠାରୁ ଫ୍ରେଞ୍ଚ ଯୁବକଙ୍କ ସହିତ ତା'ର ଅନେକଥର ଦେଖାହୋଇଥିଲେ ମଧ୍ୟ ସେ ସେହି ଘଟଣାକୁ ଅତ୍ୟନ୍ତ ମାମୁଲି ଘଟଣା ରୂପେ ଧରିନେଇଥିଲା ।

କିରିଲଙ୍କ ଜମିଦାରିରେ କେତେଟି ଭାଲୁଛୁଆଙ୍କୁ ତାଲିମ କରି ରଖାଯାଇ-

ଥିଲା । ସେମାନଙ୍କ ସହ ଖେଳିବାରେ ସେ ଏକପ୍ରକାର ଆନନ୍ଦ ଅନୁଭବ କରୁଥିଲା । ସେମାନେ ଶ୍ରେଷ୍ଠଛୁଆ ଥିଲାବେଳେ ସେହି ଭାଲୁଛୁଆଙ୍କୁ ଜମିଦାର ପେଟ୍ରୋଭିଚ୍‌ଙ୍କ ଡ୍ରଇଂରୁମ୍‌କୁ ପ୍ରତିଦିନ ଅଣାଯାଉଥିଲା । ସେ ସେମାନଙ୍କ ସହିତ ଘଣ୍ଟାଏ କାଳ ଖେଳୁଥିଲେ । ଅନେକ ସମୟରେ ଆଘାତକରି ସେ ଛୁଆ ଦୁଇଟିଙ୍କ ଭିତରେ କଳି ଲଗାଇ ଆନନ୍ଦ ଉପଭୋଗ କରୁଥିଲେ । ସେଗୁଡ଼ିକ ବଡ଼ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ଚେନ୍‌ରେ ବାନ୍ଧି ରଖାଗଲା । ସମୟେ ସମୟେ ସେମାନଙ୍କୁ ତାଙ୍କ ଆଗକୁ ଅଣାଯାଉଥିଲା । ଭାଲୁମାନେ ଆସିବା ସଙ୍ଗେ ସଙ୍ଗେ ସେମାନଙ୍କ ଆଗକୁ କଣ୍ଟା ପୋତା ଯାଇଥିବା ଏକ ମଦପିମ୍ପା ଗଡ଼ାଇଦିଆଯାଉଥିଲା । ଭାଲୁମାନେ ସେ ପିମ୍ପାକୁ ଶୁଙ୍ଘିବା ପରେ ତାଙ୍କ ପଞ୍ଝାରେ ତାକୁ ଧରିବାକୁ ଗଲାବେଳେ ପଞ୍ଝାରେ କଣ୍ଟା ଫୋଡ଼ିହୋଇଯାଉଥିଲା ଓ ସେମାନେ ଯନ୍ତ୍ରଣାରେ ଚିତ୍କାର କରି ତାକୁ ଫୋପାଡ଼ିଦେଉଥିଲେ । କିନ୍ତୁ ପରେ ପୁନର୍ବାର ସେହି ପିମ୍ପାକୁ ସେମାନଙ୍କ ନିକଟକୁ ଗଡ଼ାଇଦିଆଯାଉଥିଲା ଓ ଭାଲୁମାନେ ପିମ୍ପା ବାହାରକୁ ନଆସିବା ପର୍ଯ୍ୟନ୍ତ ଭୟଙ୍କର ଭାବରେ ଗର୍ଜନ କରୁଥିଲେ । ବେଳେ ବେଳେ ସର୍ବସାଧାରଣଙ୍କୁ ଦେଖାଇବାକୁ ସେମାନଙ୍କୁ ଶଗଡ଼ରେ ନିଆଯାଉଥିଲା । ଏହା ଥିଲା ପେଟ୍ରୋଭିଚ୍‌ଙ୍କର ମନଖୁସିର ଏକ ପ୍ରିୟ ଖେଳ ଥିଲା ।

ଜମିଦାରଙ୍କର ଆଉ ଏକ ମନଖୁସିର ଖେଳ ଥିଲା—ଗୋଟାଏ ଭୋକିଲା ଭାଲୁକୁ ଏକ କୋଠରି ଭିତରେ ରଖି ଏକ କଡ଼ା ଦେହରେ ବାନ୍ଧି-ଦିଆଯାଉଥିଲା । ବନ୍ଧାଯାଇଥିବା ଏହି ଦଉଡ଼ିର ଲମ୍ବ ପ୍ରାୟ କାନ୍ଥ ପର୍ଯ୍ୟନ୍ତ ଥିଲା । ଭାଲୁ କବଳରୁ ନିଜକୁ ରକ୍ଷାକରିବାର ଏକମାତ୍ର ନିରାପଦ ସ୍ଥାନ ଥିଲା ସେ ବନ୍ଧାହୋଇଥିବା ସ୍ଥାନର ବିପରୀତ ପାର୍ଶ୍ବର କୋଣ । ବନ୍ଦୀଧୀନ ଜଣେ ଅପରାଧୀକୁ ଆଣି ତାହାକୁ ଭାଲୁ ରହିଥିବା କୋଠରି ଭିତରକୁ ପେଲିଦିଆଯାଇ ସଙ୍ଗେ ସଙ୍ଗେ କବାଟ ବନ୍ଦକରିଦିଆଯାଉଥିଲା । ଭୋକିଲା ଭାଲୁଟା ମଣିଷଟାକୁ ଆକ୍ରମଣ କରିବାକୁ ତା' ଆଡ଼କୁ ଧାଇଁଯାଏ । ଏ ପରିସ୍ଥିତିରେ ବିପଦଗ୍ରସ୍ତ ଅସହାୟ ମଣିଷଟି ଭାଲୁ ଆକ୍ରମଣରୁ ନିଜକୁ

ବଞ୍ଚାଇବାକୁ ଘରର ସେହି କୋଣକୁ ଧାଇଁଯାଇ ସେଠାରେ କାନ୍ଥକୁ ଆଉଜିକରିହି ଭାଲୁ ଆକ୍ରମଣରୁ ଅତି କଷ୍ଟରେ ନିଜକୁ ରକ୍ଷାକରେ । କାନ୍ଥକୁ ଆଉଜି ଜୀବନ୍ମୃତ ଅବସ୍ଥାରେ ଘଣ୍ଟା ଘଣ୍ଟା ଧରି ଠିଆରହି ଦଉଡ଼ିକୁ ଛିଣ୍ଡାଇ ମାଡ଼ିଆସିବାକୁ ଚାହୁଁଥିବା ଭାଲୁର ଗର୍ଜନ ଶୁଣି ଠିଆହୋଇଥାଏ । ଏହା ତତ୍‌କାଳୀନ ସମ୍ଭ୍ରାନ୍ତବଂଶୀୟ ଲୋକମାନଙ୍କର ଏକ କୌତୁକପ୍ରଦ ଆମୋଦ ଥିଲା ।

ମାଶାର ଟିଖନ୍‌ର୍ କାମରେ ଯୋଗଦେବାର ଅଳ୍ପ କେତେ ଦିନ ପରେ ତାଙ୍କୁ ଭାଲୁ କୋଠରୀରେ ପରୀକ୍ଷା କରିବାର ନିଶା କରିଲା ଟ୍ରୋକୁରୋଭଙ୍କ ମୁଣ୍ଡରେ ହଠାତ୍ ପଶିଗଲା । ସେହି କାରଣରୁ ଦିନେ ସକାଳୁ ସେ ତାକୁ ଡକାଇପଠାଇଲେ । ଡାକରା ପାଇ ଟିଖନ୍‌ର ଆସିବା ପରେ ଏକ ଅନ୍ଧାରୁଆ ଗଳିବାଟେ ତାଙ୍କୁ ନିଆଗଲା । ସେ ଭାଲୁ କୋଠରୀ ପାଖରେ ପହଞ୍ଚିବା ମାତ୍ରକେ କୋଠରୀର ଗୋଟିଏ ପାଖର କବାଟ ଫିଟିଗଲା । ତାଙ୍କ ସାଙ୍ଗରେ ଥିବା ଦୁଇଜଣ ପରିଚାରକ ଅବିଳମ୍ବେ ତାଙ୍କୁ କୋଠରୀ ଭିତରକୁ ଠେଲିଦେଇ ବାହାରପଟୁ କବାଟ ବନ୍ଦ କରିଦେଲେ । ଏ ଆକସ୍ମିକ ବିପଦରୁ ନିଜକୁ ରକ୍ଷା କରିବା ପାଇଁ ଟିଖନ୍‌ର ହଠାତ୍ ପ୍ରସ୍ତୁତ ହୋଇଗଲେ । ଭାଲୁ ତାଙ୍କର ଖୁବ୍ ନିକଟକୁ ଆସିଯିବା ସଙ୍ଗେ ସଙ୍ଗେ ସେ ପକେଟରୁ ପିସ୍ତଲ ବାହାରକରି ତା'ର କାନମୁଣ୍ଡାକୁ ଲକ୍ଷ୍ୟ କରି ଗୁଳି ଫୁଟାଇଲେ । ଭାଲୁଟା ମରି ଟଳିପଡ଼ିଲା । ପିସ୍ତଲ ଶବ୍ଦ ଶୁଣି ସମସ୍ତେ ସେଠାକୁ ଦୌଡ଼ିଗଲେ । କୌତୁକ ମଧ୍ୟରେ ଏପରି ଏକ ଘଟଣା ଘଟିବା ଜାଣି କରିଲା ପେଟ୍ରୋଭିଚ୍ ଘର ଭିତରକୁ ପଶିଗଲେ ଓ ଘଟଣାର ଏକ ପୂର୍ଣ୍ଣ ବିବରଣୀ ଜାଣିବାକୁ ଚାହିଁଲେ—ପିସ୍ତଲ ତାକୁ କିଏ ଦେଲା ? ସେ ଏପରି କାହିଁକି କଲା ? ତେଣୁ ସେ ମାଶାକୁ ଡକାଇପଠାଇଲେ । ମାଶା ଆସି ତାର ବାପା ଜାଣିବାକୁ ଚାହୁଁଥିବା ବିଷୟଗୁଡ଼ିକ ଟିଖନ୍‌ରଙ୍କୁ ଫରାସୀରେ ଜଣାଇଦେଲା ।

ଟିଖନ୍‌ର କହିଲେ—"ମୁଁ ଭାଲୁ ବିଷୟରେ କିଛି ଜାଣି ନଥିଲି । ମୋର ସାମାଜିକ ସ୍ଥିତି ଦୃଷ୍ଟିରୁ ମୁଁ ବିନା ଦୋଷରେ କାହାର ଅପମାନ

ସହ୍ୟ କରିପାରେନାହିଁ । ସେଥିପାଇଁ ପିସ୍ତଲଟିଏ ମୋ ପାଖରେ ସର୍ବଦା ଥାଏ ।''

ମାଶା ଆଶ୍ଚର୍ଯ୍ୟହୋଇ ତାଙ୍କ କଥା ଶୁଣୁଥାଏ । ସେ ଯାହା କହିଲେ ସେ ସମସ୍ତ କଥା କରିଲ ପେଟ୍ରୋଭିଚ୍‌ଙ୍କୁ ଜଣାଇଦେଲା । କରିଲ ସବୁ ଶୁଣିଲେ—ମାତ୍ର କିଛି କହିଲେ ନାହିଁ । ବରଂ ମଲାସିଲୁକୁ ଉଠାଇ ନେଇ ତାର ତମଡ଼ାଟା ବାହାର କରି ରଖିବା ପାଇଁ ଆଦେଶଦେଲେ ।

ତା'ପରେ ସେ ତାଙ୍କ ଘରର ସମସ୍ତ ସାହାଯ୍ୟକାରୀଙ୍କୁ ଡକାଇ କହିଲେ —ଲୋକଟି ଭୀରୁ ନୁହେଁ —ମୁଁ ସେଥିପାଇଁ ତାକୁ ସମର୍ଥନ କଲି । ସେହି ଦିନଠାରୁ ସେ ତାକୁ ସ୍ନେହ କଲେ ଏବଂ ଆଉ କେବେ ବି ପରୀକ୍ଷା କରିବାକୁ ଚେଷ୍ଟା କଲେନାହିଁ ।

ସେହି ଘଟଣା ପରଠାରୁ ମାଶା ତା' ଟିଉଟରଙ୍କୁ ଅନ୍ତରରେ ଶ୍ରଦ୍ଧା କଲା ଓ ସମ୍ମାନ ଦେଲା । ଦିନକୁ ଦିନ ସେ ତାଙ୍କ ପ୍ରତି ଆକୃଷ୍ଟ ହୋଇ-ପଡ଼ିଲା । ବନ୍ଧୁତ୍ୱର ଆଦାନ ପ୍ରଦାନ ମଧ୍ୟରେ ଦିନଗୁଡ଼ିକ ସ୍ୱପ୍ନମୟ ହୋଇ-ଉଠିଲା । ମାଶାର କଣ୍ଠସ୍ୱର କୋମଳ ଥିଲା । ତାର ସଙ୍ଗୀତ କଳାର ଦକ୍ଷତା ଦେଖି ଟିଉଟର ତାକୁ ସଙ୍ଗୀତ ଶିକ୍ଷାଦେଲେ । ବର୍ତ୍ତମାନ ପାଠକେ ସ୍ପଷ୍ଟ ଅନୁମାନ କରିପାରୁଥିବେ ଯେ ମାଶା ତାଙ୍କୁ ଭଲପାଇ ବସିଲା—ଯଦିଓ ସେମାନଙ୍କ ମଧ୍ୟରେ ଅନ୍ୟ କୌଣସି ସମ୍ପର୍କ ନଥିଲା ।

## ନବମ ଅଧ୍ୟାୟ

ଅବସରବିନୋଦନ ପାଇଁ ଅତିଥିମାନେ ଆସି ପହଞ୍ଚିଗଲେ । କେତେକ ରାଜକର୍ମଚାରୀଙ୍କ ଘରେ ଆଉ କେତେକ ଭଣ୍ଡାରରକ୍ଷକ ଓ ପ୍ରିଷ୍ଟଙ୍କ ଘରେ ଆଶ୍ରୟ ନେଲେ । ଅବଶିଷ୍ଟ ବ୍ୟକ୍ତିଗଣ ଧନୀ କୃଷକଙ୍କ ଘରେ ଆତିଥ୍ୟ ଗ୍ରହଣକଲେ । ଅସ୍ତାବଲଗୁଡ଼ିକ ଘୋଡ଼ାଗାଡ଼ିରେ ପୂର୍ଣ୍ଣହୋଇଗଲା । ବଗିଚା ଓ ପୋର୍ଟିକୋଗୁଡ଼ିକ ଯାନବାହନରେ ଭର୍ତ୍ତି ହୋଇଗଲା । କରିଲ

ପେଟ୍ରୋଭିଚ୍‌ଙ୍କଦ୍ୱାରା ନିର୍ମିତ ଚର୍ଚ୍ଚର ଘଣ୍ଟା ସକାଳ ପ୍ରାର୍ଥନା ପାଇଁ ୯ଟାରେ ବାଜିଉଠିଲା । ପ୍ରତିବର୍ଷ ପରି କରିଲା ପେଟ୍ରୋଭିଚ୍‌ଙ୍କ ଉପହାରରେ ମଣ୍ଡିତ ହେବାପାଇଁ ଜଣ ଜଣ ହୋଇ ଚର୍ଚ୍ଚ ଅଭିମୁଖେ ଗ୍ଲଲେ । ବହୁ ଉପାସକଙ୍କ ସମାବେଶରେ ସ୍ଥାନଟି ପୂରିଯାଇଥିବାରୁ ସାଧାରଣ କୃଷକମାନେ ଚର୍ଚ୍ଚ ବାହାରେ ଓ ବଗିଚ୍ଚରେ ଠିଆହୋଇ ରହିଲେ । ଏହି ସମୟରେ କରିଲା ପେଟ୍ରୋଭିଚ୍‌ଙ୍କ ଘୋଡ଼ାଗାଡ଼ି ଆସି ପହଞ୍ଚିଲା । ସେ ଗାଡ଼ିରୁ ଓହ୍ଲାଇପଡ଼ି ଗମ୍ଭୀର ଭାବରେ ଠିଆହେଲେ । ତାଙ୍କ ସହିତ ମାରିଆ କିରିଲୋଭିନା ଏରଫ୍ ମାଶା ମଧ୍ୟ ଥିଲା । ଉପସ୍ଥିତ ବ୍ୟକ୍ତିମାନଙ୍କର ଚକ୍ଷୁ ମାରିଆଙ୍କର ସୌନ୍ଦର୍ଯ୍ୟରେ ଲାଗିରହିଲା । ଉପସ୍ଥିତ ସ୍ତ୍ରୀଲୋକମାନେ ତାଙ୍କର ପୋଷାକ ପରିପାଟୀ ଦେଖୁଥାନ୍ତି ।

ତତ୍‌ପରେ କାର୍ଯ୍ୟ ଆରମ୍ଭ ହେଲା । ଗୃହୋପକରଣଗୁଡ଼ିକର ଋଣଝଣ ଶବ୍ଦ ଅଦୂରରୁ ମୃଦୁଗୁଞ୍ଜନ ସୃଷ୍ଟି କରୁଥିଲା । ଗର୍ବ ଓ ଚାଞ୍ଚଲ୍ୟଭରା ନୟନରେ ଠିଆ ହୋଇଥାନ୍ତି କରିଲା । ସେତେବେଳେ ସେ ବାମ କିମ୍ବା ଦକ୍ଷିଣ କୌଣସି ପାର୍ଶ୍ୱକୁ ଦୃଷ୍ଟି ଦେଉ ନଥିଲେ । ଠିକ୍ ସେହି ସମୟରେ ପ୍ରିଷ୍ଟ ତାଙ୍କୁ ଚର୍ଚ୍ଚର ପ୍ରତିଷ୍ଠାତା ଭାବେ ସର୍ବସମ୍ମୁଖରେ ଘୋଷଣା-କଲେ ।

କାର୍ଯ୍ୟ ଶେଷହେଲା । କରିଲା ପେଟ୍ରୋଭିଚ୍ ପ୍ରଥମେ 'କ୍ରସ'କୁ ସମ୍ମାନ ପ୍ରଦର୍ଶନ କରିଥିଲେ । ତତ୍‌ପରେ ତାଙ୍କର ଅନୁଗାମୀଗଣ ଓ ପଡ଼ୋଶୀ-ବୃନ୍ଦଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇଥିଲେ । ସ୍ତ୍ରୀଲୋକମାନେ ମାଶା ଚ୍ଚରିପଟେ ଘେରି ଠିଆହୋଇଥିଲେ । ଚର୍ଚ୍ଚରୁ ଫେରିବା ସମୟରେ କରିଲା ପେଟ୍ରୋଭିଚ୍ ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କୁ ମଧ୍ୟାହ୍ନଭୋଜନ ପାଇଁ ନିମନ୍ତ୍ରଣ କରି ନିଜ ଗାଡ଼ିରେ ବସି ଗୃହାଭିମୁଖେ ଫେରିଗଲେ ।

ଗୃହଗୁଡ଼ିକ ଅଭ୍ୟାଗତଙ୍କ ଆଗମନରେ ପୂର୍ଣ୍ଣ ହୋଇଯାଇଥିଲେ ମଧ୍ୟ ଅତିଥିମାନଙ୍କର ଆସିବାରେ ବିରତି ନଥିଲା । କିନ୍ତୁ ସେମାନଙ୍କ ମଧ୍ୟରୁ କ୍ୱଚିତ୍ ଲୋକଙ୍କୁ ଉପଯୁକ୍ତ ଭାବେ ସତ୍କାର କରାଯାଉଥିଲା । ସ୍ତ୍ରୀଲୋକମାନେ ନିଜେ ନିଜେ ଗୋଟିଏ ଅର୍ଦ୍ଧବୃତ୍ତାକାର ଭାବରେ ନିଜର ଆସନ ଅଳଙ୍କୃତ କରିଥିଲେ । ସେମାନେ ମୋତି ଓ ହୀରାର ବହୁ ମୂଲ୍ୟବାନ୍ ଅଳଙ୍କାର

ପିଉଥିଲେ । ପୁରୁଷମାନଙ୍କର ଆସର ମଦ୍ୟବ୍ୟାରେଲ ନିକଟରେ ଜମିଉଠିଥିଲା । ପିଇବା ସମୟରେ ସେମାନେ ଉଚ୍ଚସ୍ୱରରେ କଥାବାର୍ତ୍ତା କରୁଥିଲେ । ବୃହଦାକାର ଟେବୁଲର ଚତୁଃପାର୍ଶ୍ୱରେ ବସିଥିବା ଲୋକଙ୍କୁ ପରିଚାରକମାନେ ପାନୀୟ ଦ୍ରବ୍ୟ ଯୋଗାଇଦେଉଥିଲେ । ଶେଷରେ ଖାଦ୍ୟ ପ୍ରସ୍ତୁତ ହେବା ସମ୍ବାଦ ସେଠାରେ ସମସ୍ତଙ୍କୁ ଜଣାଇଦିଆଗଲା ।

ଖାଇବା ଜାଗାରେ କିରିଲା ପେଟ୍ରୋଭିଚ୍ ସର୍ବାଗ୍ରେ ତାଙ୍କର ସ୍ଥାନ ଗ୍ରହଣ କଲେ । ତତ୍ପରେ ନିଜନିଜର ଯୋଗ୍ୟତାନୁଯାୟୀ ସ୍ତ୍ରୀଲୋକମାନେ ନୀରବରେ ସେମାନଙ୍କର ଆସନ ଗ୍ରହଣକଲେ । ଖ୍ରିଡଯନ୍ତ୍ରା ହରିଣୀ ପରି ତରୁଣୀଦଳ ନିଜନିଜର ଆସନରେ ବସିପଡ଼ିଲେ । ସେମାନଙ୍କର ଠିକ୍ ବିପରୀତ ପାର୍ଶ୍ୱରେ ପୁରୁଷମାନେ ବସିଲେ । ଟେବୁଲର ଶେଷାଂଶରେ ଚିଉଟର ମାଶା ସହିତ ବସିଲେ ।

ଅଷ୍ଟାଦଶ ଶତାବ୍ଦୀର ଆଦବକାଇଦା ଅନୁଯାୟୀ ସାମାଜିକ ସ୍ଥିତିସମ୍ପନ୍ନ ବ୍ୟକ୍ତିମାନଙ୍କୁ ପ୍ଲେଟ୍ ଦିଆଯାଇଥିଲା । ଲୋକମାନଙ୍କର କୋଳାହଳ ସହିତ କଣ୍ଟାଚାମୁଚର ଝଣ୍‌ଝଣ୍ ଶବ୍ଦ ସ୍ଥାନଟିକୁ ବେଶ୍ ମୁଖରିତ କରି ତୋଳିଥିଲା । ଅତିଥିମାନଙ୍କର ଆତିଥ୍ୟ ଉପରେ କିରିଲା ପେଟ୍ରୋଭିଚ୍ କ୍ଷଣକ ପାଇଁ ସନ୍ତୋଷରେ ଆଖି ବୁଲାଇଆଣିଥିଲେ । ଠିକ୍ ସେହି ମୁହୂର୍ତ୍ତରେ ଛ'ଟି ଘୋଡ଼ାଟଣା ଏକ ଘୋଡ଼ାଗାଡ଼ି ବଗିଚା ଭିତରକୁ ପ୍ରବେଶ କଲା ।

"ସେ କିଏ ?"—ଅନେକଙ୍କ କଣ୍ଠରୁ ଏକସ୍ୱରରେ ପ୍ରଶ୍ନ ବାହାରି ଆସିଲା ।

'ସେ ଆଣ୍ଟୋନ ପାଫ୍‌ନୁଟିଚ୍ ।' ଦରଜା ଖୋଲିଗଲା । ବସନ୍ତମୁହାଁ ପଚାଶବର୍ଷୀୟ ଆଣ୍ଟୋନ କ୍ଷମା ମାଗିବା ଭଙ୍ଗୀରେ ହସି ହସି ମୁଣ୍ଡ ତଳକୁ କରି ଗୃହ ମଧ୍ୟକୁ ପ୍ରବେଶ କଲେ ।

"ଆଣ୍ଟୋନ ଏଠାକୁ ଆସ ।"—କିରିଲା ପେଟ୍ରୋଭିଚ୍ ଡାକିଲେ । "ବସ ! ତୁମ ଡେରିର କାରଣ କ'ଣ କୁହ ? ତୁମର କ'ଣ ଏ ଭୋଜି ପ୍ରତି ଆଗ୍ରହ ନଥିଲା ?"

"ମୁଁ ବିନୀତ ଭାବେ ପ୍ରାର୍ଥନା କରୁଛି—ମୋତେ କ୍ଷମାକରନ୍ତୁ ।" ଆଣ୍ଟୋନ ପାଫ୍‌ନୁଟିଚ କହିଲେ ଏବଂ ନିଜର ବାଦାମୀ ରଙ୍ଗର କୋର୍ଟକୁ କାଢି ର୍‍ୟାକ୍‌ରେ ଟାଙ୍ଗିଦେଲେ । ସେ କହିଲେ--କର୍ଣ୍ଣଲ ପେଟ୍ରୋଭିଚ୍, ଏଇଟା ମୋର ଦୋଷ ନୁହେଁ । ମୁଁ ଠିକ୍ ସମୟରେ ଘରୁ ବାହାରିଥିଲି । କିନ୍ତୁ ଯାତ୍ରା ଆରମ୍ଭ କରିବାର ଅଳ୍ପ କେତେ ସମୟ ପରେ ମୋ ଗାଡ଼ିର ଚକ ଖୋଲିପଡ଼ିଲା । ତେଣୁ ମୋର ଲୋକମାନେ ମୋ ଗାଁକୁ ଯାଇ ମିସ୍ତ୍ରୀକୁ ଡାକିଆଣି ଗାଡ଼ିଟି ମରାମତି କଲେ । ଏଇ କାମରେ ତିନି ଘଣ୍ଟା ଚାଲିଗଲା । ଜଙ୍ଗଲବାଟେ ଆସିବା ସମୟରେ ମୋତେ ଡରଲାଗୁଥିଲା, ଯାହା ହେଉ—

"ହଁ, ମୁଁ ଦେଖୁଛି ତୁମେ ସାହସୀ ନୁହଁ । କ'ଣ ପାଇଁ ତୁମେ ଡରୁଛ ?"

"କର୍ଣ୍ଣଲ ପେଟ୍ରୋଭିଚ୍‌ଙ୍କୁ ଡରୁଛି, ଯଦିଓ ଡୁବ୍ରୋଭର୍ସ୍କି ତାହାର କାରଣ । ତୁମେ କେଉଁଠି ତାହାର କବଳଗତ ଏ କଥା ସମସ୍ତେ ଜାଣନ୍ତି । ଆହୁରି ମଧ୍ୟ ଏକଥା ସମସ୍ତେ ଜାଣନ୍ତି ସେ କିଏ ! କୌଣସି ଗୋଟିଏ ହେଲେ ବାଟୋଇ ତା' କବଳରୁ ଖସିଯିବା କଠିନ ଏବଂ ମୋ କ୍ଷେତ୍ରରେ ତାହା କଠିନତର ହୋଇଉଠେ ।"

"ଏମିତି ପାର୍ଥକ୍ୟ କାହିଁକି, ଭାଇ ?"

"ଏକଥା କାହିଁକି ହେଉଛି ତାହା ତୁମେ ଭଲରୂପେ ଜାଣ । ଏହାର ପାଇଁ ଆଣ୍ଡ୍ରି ଗାଭରିଲ ଭିଚ୍‌ର କ'ଣ ନହେଲା ? ଏକଥା ମୁଁ ଆପଣଙ୍କୁ ଖୁସି କରିବାକୁ କହୁନାହିଁ । ନ୍ୟାୟର ଦୋହି ଦେଇ ଡୁବ୍ରୋଭର୍ସ୍କିର ପୈତୃକ ସମ୍ପତ୍ତିକୁ କପଟ ଭାବରେ ଉଚ୍ଛେଦ କରାନଗଲା ? ଏହା କେବଳ ଆପଣଙ୍କ ପାଇଁ ନୁହେଁକି ? ପ୍ରଭୁ ତା' ମୃତ ଆତ୍ମାର ସଦ୍‌ଗତି କରନ୍ତୁ । ପୁଅ ତା' ବାପାର ଶପଥକୁ ନିଃସନ୍ଦେହରେ ନିଶ୍ଚେ ପୂରଣ କରିବ । କିନ୍ତୁ ଏପର୍ଯ୍ୟନ୍ତ ପ୍ରଭୁ ମୋତେ ରକ୍ଷାକରିଛନ୍ତି । ସେମାନେ କେବଳ ମୋର ଗୋଟିଏମାତ୍ର ଖମାର ଲୁଣ୍ଠନକରିଛନ୍ତି । ସମୟ ଆସିବ ଯେତେବେଳେ ସେମାନେ ମୋ ଘର ମଧ୍ୟ ଲୁଣ୍ଠନ କରିବେ । ଦେଖନ୍ତୁ କ'ଣ ହେଉଛି ।"

"ଘରଟା ଲୁଣ୍ଠନ ହେବାର ଯୋଗ୍ୟ କି ନୁହେଁ, ତାହା ଭଗବାନ୍

ଜାଣନ୍ତି । ମୁଁ ଭାବୁଛି କାହାଘରେ କଳାକନା ବୁଲିବ ।'' କହିଲି ପେଟ୍ରୋଭିଚ୍ କହିଲେ ।

''ଆଜି କିଛି ନାହିଁ କହିଲି ପେଟ୍ରୋଭିଚ୍—ସବୁ ସରିଗଲାଣି ।''

''ଆଣ୍ଟୋନ, ଆମେମାନେ ସମସ୍ତେ ତୁମକୁ ଜାଣିଛୁ । ତୁମେ ଗୋଟିଏ କୃପଣ । ସୂମ୍ପୁର୍ଣ୍ଣଙ୍କ ଭଳି ବଞ୍ଚିଛ । ବନ୍ଧୁମାନେ ତୁମ ଘରକୁ କେବେ ବି ଯାଆନ୍ତି ନାହିଁ । ତୁମେ ତୁମର ପ୍ରଜାମାନଙ୍କୁ ମାଡ଼ମାରି ଅନ୍ୟାୟ ଉପାୟରେ ଅର୍ଥ ସଂଗ୍ରହକରି ପେଟ ଭରିଛ ।''

ଏକ ବାଧଶିଶୁଭଳି ଆଣ୍ଟୋନ ମୁହଁରେ ହସ ଫୁଟାଇ ଅସ୍ପଷ୍ଟ ସ୍ୱରରେ କହିଲେ—''ଆପଣଙ୍କୁ ଥଟ୍ଟାଲାଗୁଛି, ଆମେ କିନ୍ତୁ ତଳିତଳାନ୍ତ ହୋଇଗଲୁଣି । ସେଇଥିପାଇଁ ତ ଆପଣଙ୍କର ବ୍ୟଙ୍ଗୋକ୍ତି ।'' ସେ ଏକଥା-ଗୁଡ଼ିକ କହୁକହୁ ମୁଣ୍ଡାମୁଣ୍ଡା ମାଂସ ସହିତ ଏପରି ଭାବରେ କଥା ଗିଳି ପକାଉଥିଲେ ଯେ ତାଙ୍କ ମୁହଁର କଥା ବାହାରକୁ ସ୍ପଷ୍ଟ ଜଣାପଡ଼ୁନଥିଲା ।

କିରିଲା ପେଟ୍ରୋଭିଚ୍ ତାଙ୍କୁ ଛାଡ଼ି ନୂଆ ପୋଲିସ କ୍ୟାପଟେନ୍‌ଙ୍କ ନିକଟକୁ ଗଲେ ଯେ କି ପୂର୍ବରୁ କେବେ ତାଙ୍କ ଘରକୁ ଆସି ନଥିଲେ ଏବଂ ସର୍ବଶେଷରେ ଟିଚରଙ୍କ ନିକଟରେ ବସିଥିଲେ ।

''କ୍ୟାପଟେନ୍, ତୁମେ ବୋଧେ ଡୁବ୍ରୋଭସ୍କିକୁ ଧରିବାକୁ ଯାଉଛ—ନୁହେଁ ?''—କିରିଲା ପଚାରିଲେ ।

କ୍ୟାପଟେନ୍ ଡରରେ ମୁଣ୍ଡ ତଳକୁ କରି ଟିକେ ହସି କହିଲେ, ''ଆମେମାନେ ଚେଷ୍ଟା କରୁଛୁ ।''

''ଚେଷ୍ଟା କରିବ—ବହୁଦିନ ହେଲା ବହୁତ ଲୋକ ଚେଷ୍ଟା କରୁଛନ୍ତି—କିନ୍ତୁ କିଛି ହୋଇପାରୁନାହିଁ । କାହିଁକି ବା ତୁମେ ତାକୁ ଧରିବ ? ଡୁବ୍ରୋଭସ୍କି ପାଉଥିବା ଅର୍ଥରୁ ତୁମକୁ କିଛି ମିଳୁଥିବ । କାହିଁକି ମିଛଟାରେ ସେତକ ହରାଇବ ? ଏଥା ନୁହେଁ କ୍ୟାପଟେନ୍ ?''

''ସମ୍ପୂର୍ଣ୍ଣ ସତ କଥା ।'' ଦ୍ୱନ୍ଦ୍ୱରେ ପଡ଼ି କ୍ୟାପଟେନ୍ ଉତ୍ତରଦେଲେ । ଉପସ୍ଥିତ ଅତିଥିମାନେ ତାଙ୍କ କଥାରେ ହୋ ହୋ ହୋଇ ହସିଉଠିଲେ ।

''କର୍ତ୍ତବ୍ୟପରାୟଣତା ପାଇଁ ମୁଁ ସେହି ଲୋକଟିକୁ ଭଲପାଏ । ବଡ଼

ଦୁଃଖର କଥା ଉକାୟତମାନେ ତାକୁ ପୋଡ଼ିଦେଲେ । ସେହି ତରୁଣ ଆଲେକ୍‌ସଭିର୍ ଥିଲେ ଆଜି ଆମ ଅଞ୍ଚଳ ଏଭଳି ଅବସ୍ଥାରେ ନଥାନ୍ତା ! ଡୁବ୍ରୋଭସ୍କିର ଶେଷ ଖବର କ'ଣ ? ସେ କେବେ କେଉଁଠି ଦେଖା-ଯାଇଥିଲା ?''

ଜଣେକ ମହିଳା ଗମ୍ଭୀର ସ୍ୱରରେ ଉତ୍ତର ଦେଲେ, ''ମୋ ଘରେ । ମୋ ଡାଇନିଂ ଟେବୁଲରେ । ସେ ମୋ ସହିତ ଭୋଜନ କରିଛନ୍ତି ।''

ପ୍ରତ୍ୟେକ ଲୋକ ତାଙ୍କୁ ଚାହିଁଲେ । ସେ ଜଣେ ସରଳା, ଭଦ୍ର, ସ୍ନେହ-ପ୍ରବଣା, ଦୟାଳୁ ଓ ଖୁସି ମିଜାଜ୍‌ର ମହିଳା । ତାଙ୍କ ନାମ ଆନ୍ନା ସାଭିସ୍ନା । ପ୍ରତ୍ୟେକ ଲୋକ କୌତୂହଳରେ ଘଟଣା କ'ଣ ଜାଣିବା ପାଇଁ ତାଙ୍କୁ ଚାହିଁରହିଲେ ।

ସେ କହିଲେ—''ତିନି ସପ୍ତାହ ତଳେ ମୁଁ ମୋ ଭୃତ୍ୟକୁ କିଛି ଟଙ୍କା ଦେଇ ଭନ୍ୟୁଶା ନିକଟକୁ ପଠାଇବା ପାଇଁ ପୋଷ୍ଟ-ଅଫିସକୁ ପଠାଇଥିଲି । ମୋ ପୁଅ ଜଣେ ଅଫିସର୍ ହେଲେ ମଧ୍ୟ ମୁଁ ତା' ନିକଟକୁ ପ୍ରତି ମାସରେ କିଛି କିଛି ଟଙ୍କା ପଠାଉଥିଲି । ସେ ମୋ ଘରଠାରୁ ସାତମାଇଲ ଦୂରରେ ରହୁଥିଲା । ଡୁବ୍ରୋଭସ୍କି କଥା ମୋ ମନକୁ ପ୍ରବେଶ କରିବା ମାତ୍ରକେ ମୁଁ ତା ନିକଟକୁ ଟଙ୍କା ଡାକ ଜରିଆରେ ପଠାଇବାକୁ ସ୍ଥିରକଲି । ତେଣୁ ମୁଁ ଦୁଇ ହଜାର ଟଙ୍କା ଭୃତ୍ୟକୁ ଦେଇ ଡାକଘରକୁ ପଠାଇଲି । କିଛି ସମୟ ପରେ ମୋ ଲୋକଟି ଫେରିଆସିଲା । ତାର ଶୁଷ୍କ ଓ ଯନ୍ତ୍ରଣାକାତର ମୁହଁ ଦେଖି ଘଟଣା କ'ଣ ହୋଇପାରେ ମୁଁ ସହଜରେ ଅନୁମାନ କରି-ନେଲି । ଈଶ୍ୱରଙ୍କ ଦୟାରୁ ଯେ ଯେ ବର୍ଷ ଆସିପାରିଲା ସେତିକ ଯଥେଷ୍ଟ ଥିଲା । ମୁଁ ସେଥିପାଇଁ ପ୍ରଭୁଙ୍କୁ କୃତଜ୍ଞତା ଜଣାଇଲି । ପୁଅ ପାଖକୁ ଆଶୀର୍ବାଦ ଜଣାଇ ଚିଠି ଖଣ୍ଡିଏ ଲେଖି ସେଥିରେ ସମସ୍ତ ଘଟଣା ବର୍ଣ୍ଣନା କରିଥିଲି ।

''ଗୋଟିଏ ସପ୍ତାହ ଚାଲିଗଲା । ଦିନେ ହଠାତ୍ ଗୋଟିଏ ଗାଡ଼ି ଆସି ମୋ ଘର ଆଗରେ ରହିଲା । ଗାଡ଼ି ଭିତରୁ ଜଣେ ସୌମ୍ୟ ସୁନ୍ଦର ପଞ୍ଚତିରିଶ ବର୍ଷ ବୟସର ଯୁବକ ଅଫିସର ଓହ୍ଲାଇ ଆସିଲେ । ସେ ବେଶ୍ ବଳିଷ୍ଠ ଥିଲେ । ସୈନ୍ୟବାହିନୀରେ ସେ ମୋ ସ୍ୱାମୀଙ୍କ ସହିତ

କାମ କରୁଥିଲେ । ତେଣୁ ସେ ମୋତେ ଦେଖିବାକୁ ଆସିଥିଲେ ବୋଲି କହିଲେ । ମୁଁ ତାଙ୍କୁ ଖୁବ୍ ଖୁସିହୋଇ ମୋ ନିଜ ଘର ଭିତରକୁ ଆଦରରେ ଡାକିନେଇଥିଲି ।

ସେ ସାଧାରଣ ଭାବେ କିଛି କଥୋପକଥନ ପରେ ଡୁବ୍ରୋଭସ୍କି ବିଷୟରେ ଆଲୋଚନା କରିବାକୁ ଚାହିଁଲେ । ମୁଁ ମୋର ସମସ୍ତ ଦୁଃଖ ତାଙ୍କ ନିକଟରେ ପ୍ରକାଶକଲି । ଆଶ୍ଚର୍ଯ୍ୟ ହୋଇ ସେ କହିଲେ, "ଡୁବ୍ରୋଭସ୍କି ତ ସାଧାରଣ ଲୋକଙ୍କର କୌଣସି କ୍ଷତିକରେନାହିଁ । କେବଳ ଦୁଷ୍ଟ ବଦ୍‌ମାସ୍ ଲୋକଙ୍କର ସମ୍ପତ୍ତିର କିଛି ଅଂଶ ନିଏ । ତାକୁ ହତ୍ୟାକାରୀ ବୋଲି କେହି କହିବେନାହିଁ । ଦୟାକରି ଟିକେ ଆପଣଙ୍କ ଭୃତ୍ୟକୁ ଡାକନ୍ତୁ ।"

ମୁଁ ଭୃତ୍ୟକୁ ଡକାଇଲି । ସେ କୋଠରି ଭିତରେ ପ୍ରବେଶ କଲା ଏବଂ ତା ଆଗରେ ସେ ଅଫିସରଙ୍କୁ ଦେଖି ଘାବରାଇଗଲା । ସେ ଥରି ଥରି ତାଙ୍କ ପାଦ ତଳେ ପଡ଼ିଗଲା । ତା'ପରେ ଘଟିଯାଇଥିବା ସମସ୍ତ ସତ ଘଟଣା ଗୋଟି ଗୋଟି କରି କହିଲା । ଲୋଭ ଯୋଗୁ ସେ ଟଙ୍କା ମାରିନେଇ ମତେ ଯେ ମିଛ କହିଥିଲା, ତାହା ସ୍ୱୀକାରକଲା ଏବଂ ତତ୍‌କ୍ଷଣାତ୍ ଶହେ ଓ ଟଙ୍କା ଆଣି ପାଦତଳେ ଥୋଇଦେଲା । ଏ ସମସ୍ତ ଘଟଣା ଘଟିସିବା ପରେ ଅଫିସର ଜଣକ ମୋ ସହିତ ଖାଇବସିଲେ । ଖାଇବା ପର୍ବ ସରିବା ପରେ ମୋ ପରିଚାରକକୁ ସାଙ୍ଗରେ ଡାକିନେଇ ସେ ଚାଲିଗଲେ । ତାପରେ ସେ ଜଙ୍ଗଲର ଗୋଟିଏ ଗଛରେ ବନ୍ଧାହୋଇଥିବା ଦେଖିଲୁ ଏବଂ ତା ଦେହରେ ଅସଂଖ୍ୟ ବେତାଘାତ ହୋଇଥିଲା ।"

ସମସ୍ତେ ଭଦ୍ରମହିଳାଙ୍କ କଥା ଶୁଣିଲେ ଓ ଡୁବ୍ରୋଭସ୍କି ପ୍ରତି ସମସ୍ତେ ସହାନୁଭୂତିଶୀଳ ହୋଇଉଠିଲେ । ଏ ଘଟଣା ଶୁଣି ମାଶାର ଅନ୍ତର ପ୍ରେମମୟ ହୋଇଗଲା ।

କିରିଲ କହିଲେ—"ଆନା, ମୁଁ ଜାଣେନାହିଁ କିଏ ତୁମ ଘରକୁ ଯାଇଥିଲା । ହେଲେ କ'ଣ ହେଲା—ସେ କେବେ ଡୁବ୍ରୋଭସ୍କି ନୁହେଁ ।"

ଆନା କହିଲା—"ନାଁ, ସାର୍ । ଡୁବ୍ରୋଭସ୍କି ବରଂ ପଥଭ୍ରାନ୍ତ ପଥିକ-ମାନଙ୍କୁ ଠିକ୍ ବାଟ ଧରାଇଦେଇଥାଏ ।"

କରଲ କହଲ—ସେ ବିଷୟରେ ମୁଁ କିଛି କହିପାରିବ ନାହିଁ । ମୁଁ କେବଳ ଏତିକି କହିବ ଯେ ସେ ଡୁବ୍ରୋଭସ୍କି ନୁହେଁ । ତା' ପିଲାବେଳର କଥା ମୋର ମନେଅଛି । ସେ ଦେଖିବାକୁ ସୁନ୍ଦର । ତା' ମୁଣ୍ଡରେ ଖୁବ୍ ସୁନ୍ଦର କଳା କୁଞ୍ଚୁକୁଞ୍ଚିଆ କେଶ । ମୋ ଝିଅ ମାଶାଠାରୁ ମୋଟେ ପାଞ୍ଚ ବର୍ଷ ବଡ଼ । ତାକୁ ତେଇଶି ବର୍ଷରୁ କେବେ ଅଧିକ ହେବନାହିଁ ।''

ପୋଲିସ କ୍ୟାପ୍‌ଟେନ ସାଙ୍ଗେ ସାଙ୍ଗେ କହିଲେ—''ହଁ, ହଁ, ଠିକ୍ କଥା । ମୋ ପାଖରେ ତା' ସମ୍ବନ୍ଧୀୟ ସମସ୍ତ ତଥ୍ୟ ଅଛି । ତାକୁ ପଇଁତିରିଶ ବର୍ଷ ହେବନାହିଁ ।''

କ୍ୟାପ୍‌ଟେନ୍‌ର କଥା ଶୁଣୁ ଶୁଣୁ କରଲ ପେଟ୍ରୋଭିଚ୍ ଉଚ୍ଚସ୍ୱରରେ କହିଲେ—'ପଢ଼ିଦିଅ, ସମସ୍ତେ ଶୁଣନ୍ତୁ । ତାହାହେଲେ ସମସ୍ତେ ସାବଧାନ ହୋଇଯିବେ ।'

କ୍ୟାପ୍‌ଟେନ ପଢ଼ିଲେ—ଭ୍ଲାଦମିର ଡୁବ୍ରୋଭସ୍କି—ଯାହା ତା' ପରିଚାରକ ଓ ପରିଚାରିକାମାନଙ୍କଠାରୁ ଶୁଣିବାକୁ ମିଳେ ସେ ଜଣେ ସୁଶ୍ରୀ ଯୁବକ । ଲମ୍ବା ନାକ, କୁଞ୍ଚୁକୁଞ୍ଚିଆ କେଶ, ମଧ୍ୟମ ଉଚ୍ଚତା । ଦାଢ଼ି-ଶୂନ୍ୟ ମୁଖ, ବାଦାମୀ ରଙ୍ଗର ଆଖି ।

—''କ'ଣ ଏତିକି ?''

—''ହଁ, ଏତିକି''—କହି କ୍ୟାପ୍‌ଟେନ୍ କାଗଜଟି ଭାଙ୍ଗିଭୁଙ୍ଗି ପକେଟରେ ରଖିଲେ ।

ସେହି ସମୟରେ 'କକେସିଆନ' ମଦ୍ୟ ବୋତଲ ସମସ୍ତଙ୍କୁ ବଢ଼ାଇ-ଦିଆଗଲା । ନିଶାର ପ୍ରାବଲ୍ୟ ଯୋଗୁ କଥାର ସ୍ୱର କ୍ରମେ ବଢ଼ିଗଲା । ସେତିକବେଳେ କରଲ ପେଟ୍ରୋଭିଚ୍ ବଡ଼ପାଟିରେ କହିଲେ—''ଆମେ ତରାସ ଆଲେକ୍‌ସଭିଚ୍‌ଙ୍କ ପରି ଅଫିସର ଆଉ ପାଇବା ନାହିଁ । ସେ ଥିଲେ ଡୁବ୍ରୋଭସ୍କି ବି ତାଙ୍କ ଆଖିରୁ ଖସିଯାଇପାରିନଥାନ୍ତା । ସେ ତାକୁ ଓ ତାର ଦଳକୁ ଧରି ଦଣ୍ଡ ଦେଇପାରନ୍ତେଣି । ମୋ ପାଖରେ କୋଡ଼ିଏ ଜଣ ବଳିଷ୍ଠ ସ୍ୱାସ୍ଥ୍ୟବାନ୍ ଯୁବକ ଅଛନ୍ତି । ସେମାନେ ଏକ ଏକ ଭାଲୁକୁ ଶାସନ କରିପାରିବେ । କିନ୍ତୁ ସେମାନଙ୍କର ସମସ୍ତ କୌଶଳ ବର୍ତ୍ତମାନ ବ୍ୟର୍ଥ

ହୋଇଛୁ । ମୋ ପୋଷା ଭାଲୁ ବି ତାକୁ ଧରିପାରନ୍ତାଣି ।”

—“କ'ଣ ହେଲା ଆପଣଙ୍କ ଭାଲୁର ?”

—“ମଜା ଖେଳୁ ଖେଳୁ ଶତ୍ରୁ ହାତରେ ତା'ର ମୃତ୍ୟୁ ହେଲା । ଏଇ ସେହି ବ୍ୟକ୍ତି—ଗୃହଶିକ୍ଷକ ।”

କରିଲ ପେଟ୍ରୋଭିଚ୍‌ଙ୍କଠାରୁ ଘଟିଯାଇଥିବା ଘଟଣାଟି ପୁନର୍ବାର ସମସ୍ତେ ଶୁଣିଲେ ଏବଂ ଆଶ୍ଚର୍ଯ୍ୟ ହୋଇ ସେ ନୀରବଦ୍ରଷ୍ଟା ବ୍ୟକ୍ତିଟିକୁ ଚାହିଁରହିଲେ ।

ଦୀର୍ଘ ତିନି ଘଣ୍ଟା ଧରି ଚାଲିଥିବା ସଭାକାର୍ଯ୍ୟ ଏଥର ଶେଷହେଲା ।

## ଦଶମ ଅଧ୍ୟାୟ

ପ୍ରାୟ ସନ୍ଧ୍ୟା ୬ଟା ବେଳକୁ ଅତିଥିମାନେ ଯିବାକୁ ବାହାରିଲେ । କିନ୍ତୁ ଗେଟ୍ ବନ୍ଦ କରିବାକୁ ଆଦେଶ ଦିଆଗଲା । ଠିକ୍ ସେହି ସମୟରେ ବଲ୍-ରୁମ୍‌ର କବାଟ ଖୋଲିଗଲା । ନିମନ୍ତ୍ରିତ ଅତିଥିମାନେ ସେହି ହଲ୍ ଭିତରକୁ ପ୍ରବେଶକଲେ । ଆନନ୍ଦ ଉତ୍ସବରେ ମାତି ଗ୍ଲାସ ପରେ ଗ୍ଲାସ ମଦ୍ୟ ପାନ କରି ଚାଲିଲେ । ବୟସ୍କା ମହିଳାମାନେ ଦଳବାନ୍ଧି ତାସ୍ ଖେଳି ବସିଲେ । ସେଠାରେ ସ୍ତ୍ରୀଲୋକମାନଙ୍କର ସଂଖ୍ୟା ଖୁବ୍ କମ୍ ଥିଲା । ତେଣୁ ପୁରୁଷମାନେ ସେମାନଙ୍କୁ କେନ୍ଦ୍ର କରି ବସିଥିଲେ । ତରୁଣ ତରୁଣୀ-ମାନେ ନାଚରେ ମସଗୁଲ୍ ହୋଇଉଠିଥିଲେ । ପ୍ରାୟ ସବୁ ତରୁଣୀ ଏଇ ଟିଉଟର୍‌ଙ୍କ ସହିତ ନାଚିବାକୁ ଚାହୁଁଥିଲେ ସୁଦ୍ଧା ସେ କେବଳ ମାଶାକୁ ନାଚ ପାଇଁ ବାଛୁଥିଲେ । ରାତି ୪ଟା ବେଳକୁ ନାଚ ବନ୍ଦକରି ରାତ୍ରି ଭୋଜନ ସାରିବାର ନିର୍ଦ୍ଦେଶ ମିଳିଥିଲା । ସବୁଠାରୁ ବେଶୀ କ୍ଲାନ୍ତ ହୋଇ ପଡ଼ିଥିବା ଟିଉଟର୍ ନିଜ ବେଡ୍‌ରୁମ୍‌କୁ ଚାଲିଯାଇଥିଲେ ।

ବୟସ୍କା ସ୍ତ୍ରୀଲୋକମାନେ ଦଳଦଳହୋଇ ବସି ଗପକରୁଥିଲେ । ସେମାନଙ୍କ ନିକଟରେ ଝିଅମାନେ ବି ବସି ଗପ କରୁଥିଲେ । ପୁରୁଷମାନେ ସେମାନଙ୍କୁ କେନ୍ଦ୍ରକରି ବସି ଖୁସି ଗପ କରୁଥିଲେ । ମୋଟ ଉପରେ ରାତ୍ରୀ

ବ୍ରେକ ସଭାଟି ବେଶ୍ ସରଗରମ ଓ ଆନନ୍ଦପ୍ରଦ ହୋଇପାରିଥିଲା ।

ଏତେ ବଡ଼ ଆନନ୍ଦ ଉତ୍ସବପୂର୍ଣ୍ଣ ସଭାରେ କେବଳ ଆଣ୍ଟୋନ ପଫନୁଟିଚ୍ ନୀରବ ହୋଇ ବସି ଡକାୟତମାନଙ୍କ କଥା ଭାବୁଥିଲେ । ସେ ଭୀତତ୍ରସ୍ତ ଥିବାରୁ ଆନନ୍ଦ ଉତ୍ସବରେ ଯୋଗଦେଇପାରିନଥିଲେ । କିଏ ତାଙ୍କୁ ଡକାୟତମାନଙ୍କ କବଳରୁ ରକ୍ଷାକରିବ—ସେ ବିଷୟରେ ସେ ଚିନ୍ତିତ ଥିଲେ । ଗୃହଶିକ୍ଷକଙ୍କର ସାହସିକତା କାହାଣୀ ଶୁଣି ଓ ତାଙ୍କର ସୁନ୍ଦର ସ୍ୱାସ୍ଥ୍ୟ ଦେଖି ତାଙ୍କ ମନରେ ପ୍ରତ୍ୟୟ ଜାତ ହୋଇଥିଲା । ତେଣୁ ହତଭାଗ୍ୟ ଆଣ୍ଟୋନ ଉତ୍ସବଶାଳାରୁ ଅତିଥିମାନେ ଯିବାପରେ ସେ ଫ୍ରେଞ୍ଚ ଗୃହଶିକ୍ଷକଙ୍କ କୋଠରୀରେ ପ୍ରବେଶକରିଥିଲେ ।

ଆଣ୍ଟୋନ ଫ୍ରେଞ୍ଚ ଟ୍ୟୁଟର୍‌ଙ୍କ ବ୍ୟବହାରରେ ଖୁବ୍ ସନ୍ତୁଷ୍ଟହୋଇ ବିଶ୍ରାମ ନିମନ୍ତେ ତାଙ୍କ ଗୃହ ମଧ୍ୟକୁ ପ୍ରବେଶ କଲେ । ଉପସ୍ଥିତ ଅତିଥିବୃନ୍ଦ ପରସ୍ପରକୁ ଶୁଭରାତ୍ରି ଜଣାଇ ନିଜ ନିଜର ବିଶ୍ରାମ କକ୍ଷାଭିମୁଖେ ଚାଲିଗଲେ । ଆଣ୍ଟୋନଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ସେ ଟ୍ୟୁଟରଙ୍କ କୋଠରୀରେ ତାଙ୍କ ପାଖରେ ଥିବା ଅର୍ଥ ସହ ନିର୍ଭୟରେ ଶୋଇପାରିବେ ।

ଘରର ଦୁଆର ମୁହଁରେ ପହଞ୍ଚିବା ପରେ ଟିଉଟର ମହମବତିଟିଏ ଲଗାଇଲେ । ତାପରେ ସେମାନେ ନିଜନିଜର ରାତ୍ରି ପୋଷାକ ପିନ୍ଧିଲେ । ଟିଉଟର ନିଜର ପୋଷାକ ବଦଳାଉଥିବା ସମୟରେ ଆଣ୍ଟୋନ ଘରର କଳଣିଗୁଡ଼ିକର ଅବସ୍ଥା ଲକ୍ଷ୍ୟକରୁଥିଲେ । କବାଟ ଓ ଝରକା ବେଶ୍ ମଜବୁତ୍ ଥିଲା । କବାଟ ଭିତରୁ ବନ୍ଦ କରିବା ପାଇଁ ଏକମାତ୍ର କଳଣି ଥିଲା । ତେଣୁ ସେ ବିଷୟ ଆଣ୍ଟୋନ ଟିଉଟରଙ୍କୁ ଜଣାଇବାକୁ ଚାହୁଁ-ଥିଲେ । କିନ୍ତୁ ତାଙ୍କର ଫ୍ରେଞ୍ଚ ଭାଷାରେ ଦକ୍ଷତା ନଥିବାରୁ ସେ ଠିକ୍ ଭାବରେ ଘଟଣାଟି ତାଙ୍କୁ ବୁଝାଇଦେଇ ପାରୁନଥିଲେ, ଫଳରେ ସେ ନୀରବ ରହିଲେ । ଦୁହିଁଙ୍କ ବିଛଣା ଖୁବ୍ ପାଖାପାଖି ପଡ଼ିଥିଲା । ଉଭୟେ ଶୋଇବା ପାଇଁ ଖଟ ଉପରକୁ ଉଠିବା ମାତ୍ରକେ ଟିଉଟର ବତିଟି ଲିଭାଇଦେଲେ ।

ଆଣ୍ଟୋନ ଅନ୍ଧାରରେ ଶୋଇପାରିବେନାହିଁ ବୋଲି ଚିତ୍କାର କରି-ଉଠିଲେ । କିନ୍ତୁ ଟିଉଟର ତାଙ୍କ କଥା ବୁଝିପାରୁନଥିବାରୁ ଶୁଭରାତ୍ରି

ଜଣାଇ ଶୋଇଗଲେ ।

ଆଣ୍ଟୋନ ସେମିତ ବିଛଣାରେ ପଡ଼ିରହିଥାନ୍ତି । ଅଳ୍ପ ସମୟ ପରେ ସେ ଟିଉଟରଙ୍କର ଘୁଙ୍ଗୁଡ଼ି ଶୁଣିବାକୁ ପାଇଲେ । କବାଟ ଖୋଲାଥିବାରୁ ସେ ଭୃତ୍ୟାକୁ ଡାକପକାଇଲେ । କିନ୍ତୁ ଅତ୍ୟଧିକ ମଦ୍ୟପାନ ଯୋଗୁ କିଏ କେଉଁଠି ଚେତାଶୂନ୍ୟ ହୋଇ ଶୋଇପଡ଼ିଥିଲେ ଯେ କେହି ଆଣ୍ଟୋନଙ୍କ ଡାକ ଶୁଣି ପାରିଲେ ନାହିଁ । ଅବଶେଷରେ ସେ ବାଧ୍ୟହୋଇ ଶୋଇପଡ଼ିଲେ । ନିଶା ଯୋଗୁ ତାଙ୍କୁ ମଧ୍ୟ ନିଦ ହୋଇଯାଇଥିଲା । ପାହାନ୍ତିଆ ବେଳକୁ ତାଙ୍କ ବେକକୁ କିଏ ମାଡ଼ିବସିଲା ପରି ସେ ଅନୁଭବ କଲେ । ଭୟରେ ସେ ଆଖି ଖୋଲିଲେ । ଶରତ୍ ସକାଳର ଝାପ୍‌ସା ଆଲୋକରେ ସେ ଟିଉଟରକୁ ବନ୍ଧୁକ ଧରି ଠିଆହୋଇଥିବାର ଦେଖିଲେ । ଆଣ୍ଟୋନ୍ କେବଳ ନିର୍ବାକ୍‌ହୋଇ କିଛି ସମୟ ରୁହିଁରହିଲେ । ତାପରେ ସେ ସାହାଯ୍ୟ ପାଇଁ ଚିତ୍କାରକରିଉଠିଲେ ।

ଟ୍ୟୁଟର୍ ଧମକ ଦେଇ କହିଲେ—ବଦ୍‌ମାସ୍, ପାଟି ବନ୍ଦକର । ଶାନ୍ତିରେ ଶୋଇପଡ଼ ।

ତାପରେ ଟିଉଟର ପରିଷ୍କାର ରୁଷୀୟ ଭାଷାରେ କହିଲେ—ମୁଁ ଡୁବ୍ରୋଭସ୍କି ।

## ଏକାଦଶ ଅଧ୍ୟାୟ

ଆମର ପାଠକମାନଙ୍କୁ ବିଗତ କେତେକ ଘଟଣା ବିଷୟରେ ଏ ପର୍ଯ୍ୟନ୍ତ ଅବଗତ କରାଇନାହୁଁ; ବର୍ତ୍ତମାନ ସେ ବିଷୟରେ କିଛି କହିବାକୁ ଯାଉଛୁ ।

ଷ୍ଟେସନ୍‌ର ଗୋଟିଏ କୋଣରେ ଜଣେ ସାଧାରଣ ବିଦେଶୀ ନୀରବରେ ବସିଥିଲେ । ସେତିକବେଳେ ପୋଷ୍ଟମାଷ୍ଟରଙ୍କ ଗାଡ଼ି ଚକରେ ତେଲ ଦେବା ପାଇଁ ସେଠାରେ ପହଞ୍ଚିଲା । ଅପରିଚିତ ବ୍ୟକ୍ତିଙ୍କ ପାଖରେ ପର୍ଯ୍ୟଟକ ବ୍ୟାଗଟିଏ ରଖାଯାଇଥିଲା । ସେ' ଗ୍ଲା କ କଫି କିଛି ପିଉନଥିଲେ—

କେବଳ ଝରକା ପାଖରେ ବସି କ୍ରମାଗତ ଭାବେ ହୁଇସିଲ୍ ବଜାଉଥିଲେ । ସେଥିପାଇଁ ପୋଷ୍ଟମାଷ୍ଟରଙ୍କ ସ୍ତ୍ରୀ ବଡ଼ ଅସ୍ୱସ୍ତି ଅନୁଭବ କରୁଥିଲେ— କାରଣ ସେ ତାଙ୍କର ବିପର୍ଯ୍ୟସ୍ତ ପାର୍ଶ୍ୱରେ ବସିଥିଲେ । ସେ ବିରକ୍ତିରେ କହିଲେ—"ଓଃ, ଭଗବାନ୍, ଆଚ୍ଛା ଗୋଟିଏ ଘଟିନଜାଳ ଏଠାରେ ଜୁଟାଇଦେଲେ ।"

ପୋଷ୍ଟମାଷ୍ଟର ତାଙ୍କ ସ୍ତ୍ରୀଙ୍କୁ କହିଲେ, "ସେଥିରେ ତୁମର କ'ଣ ଅସୁବିଧା ହେଉଛି ? ସେ ବଜାଉଥାନ୍ତୁ ।"

"କ'ଣ ହେଉଛି ? ଆମର ଦୁର୍ଭାଗ୍ୟ ଆସିଲାଣି ।"

"ଦୁର୍ଭାଗ୍ୟ ? ତୁମେ ପଇସା ଚାଲିଯିବ ବୋଲି ଭାବୁଛ ? ଆମର ପଇସା କାହିଁ ? ସେ ତା'ର ହୁଇସିଲ ଫୁଙ୍କୁଥାନ୍ତି— ଆମର କ'ଣ ଅଛି ?"

"ତାଙ୍କୁ ଘୋଡ଼ା ଦେଇଦିଅ—ସେ ଯେଉଁଆଡ଼େ ପାରୁଛି ସିଆଡ଼େ ଯାଉ ।"

"ସେ ଅପେକ୍ଷା କରୁ । ଅଞ୍ଚଳରେ ମୋଟେ ଚାରୋଟି ଘୋଡ଼ାଗାଡ଼ି ଅଛି । ଗୋଟିଏ ବିଶ୍ରାମ ନେଉଛି । ସେ କୌଣସି ମୁହୂର୍ତ୍ତରେ କେହି ଭଦ୍ରବ୍ୟକ୍ତି ଆସିପାରନ୍ତି । ଦେଖ ତ ଖୁବ୍ ଦ୍ରୁତଗତିରେ ଘୋଡ଼ା ଝପଟାଇ କେହି ଜଣେ ଆସୁଛି । ଭାବୁଛି, କେହି ସେନାପତି ବୋଧେ !'

ଧର୍ମଶାଳା ସମ୍ମୁଖରେ ଆସି ଗୋଟିଏ ଘୋଡ଼ାଗାଡ଼ି ରହିଲା । ପରିଚାରକଟି ଗାଡ଼ି ଭିତରୁ ବାକ୍ସପତ୍ର ଓହ୍ଲାଇନେଲା । ତାପରେ ଦେହରେ ଲମ୍ବା ମିଲିଟାରି କୋଟ୍ ଓ ମୁଣ୍ଡରେ ଧଳା ଟୋପି ପିନ୍ଧିଥିବା ଜଣେ ଯୁବକ ଓହ୍ଲାଇଆସି ସେ ପୋଷ୍ଟମାଷ୍ଟରଙ୍କ ସମ୍ମୁଖରେ ଠିଆହେଲେ । ଭୃତ୍ୟଟି ତା' ପରେ ତାଙ୍କ ଆସବାବପତ୍ର ନେଇ ଝରକା ପାଖରେ ବସିଥିବା ଲୋକଟି ପାଖରେ ରଖିଲା ।

ପ୍ରଭୁତ୍ୱବ୍ୟଞ୍ଜକ ସ୍ୱରରେ ଅଫିସର୍ ଜଣକ ପଚାରିଲେ—'ଘୋଡ଼ା !"

"ଆପଣ ଯେଉଁପ୍ରକାରର ଚାହିଁବେ ଆଦେଶ ଦେଲେ ନେଇଆସିବି ।"

"ମୋର କିଛି ଆଦେଶ ନାହିଁ । କେବଳ ଜଣେ ପରିବ୍ରାଜକ— ଜାଣିଛ, ମୁଁ କିଏ ?'

ପୋଷ୍ଟମାଷ୍ଟର ତାଙ୍କ କଥା ଶୁଣି ଗାଡ଼ିଚାଳକ ପାଖକୁ ଦୌଡ଼ିଯାଇ ପଚାରିଲେ—'ଅନ୍ୟମାନେ କାହାନ୍ତି ?' ତାଙ୍କ ସ୍ତ୍ରୀଙ୍କ ଅନୁଚ୍ଚ ସ୍ୱରରେ

କହିଲେ, "ଭଗବାନ୍ ଜାଣନ୍ତି—ଏ ଫ୍ରେଞ୍ଚ ଯୁବକଟି ଦୀର୍ଘ ପାଞ୍ଚ ଘଣ୍ଟା ହେବ ଗାଡ଼ି ପାଇଁ ଏଠାରେ ଅପେକ୍ଷା କରି ବସି ହୁଇସିଲ୍ ବଜାଉଥିଲେ, ଅଥଚ ଆମେ ଗାଡ଼ି ପାଇଁ—"

ଅଫିସର ଜଣକ ଫ୍ରେଞ୍ଚ ଭାଷାରେ କହିଲେ, "ମୁଁ ପଚାରିପାରେ କି ଆପଣ କୁଆଡ଼େ ଯାଉଛନ୍ତି ?"

—"ନିକଟସ୍ଥ ସହରକୁ—ଜମିଦାରଙ୍କ ଘରକୁ ଯିବି । ମୁଁ ତାଙ୍କର ଗୃହ ଶିକ୍ଷକ । ସେ ଚିଠିଦ୍ୱାରା ଡକାଇଛନ୍ତି । ସହରରୁ ଘୋଡ଼ାନେଇ ଚାଲିଯିବି ।"

—'କେଉଁ ଜମିଦାର ?'

—"ଟ୍ରୋସ୍କୁରୋଭ !"

"ହେ ପ୍ରଭୁ—ସେ ତ ଏକ ଖଳ ପ୍ରକୃତିର ଲୋକ । ଲୋକେ କୁହନ୍ତି —ସେ ତାଙ୍କ ଲୋକମାନଙ୍କ ପ୍ରତି ବଡ଼ ଖରାପ ବ୍ୟବହାର କରନ୍ତି । ସେଥିପାଇଁ ସେଠାରେ କେହି ବେଶୀ ଦିନ ରହିପାରନ୍ତି ନାହିଁ । ତା' ନାଁ ଶୁଣିଲମାତ୍ରକେ ଲୋକେ ଡରରେ ଥରିଉଠନ୍ତି । ସେ କୌଣସି ଉତ୍ସବରେ ତାଙ୍କ ଟିଉଟରକୁ ଭାଗ ନେବାକୁ ଡାକନ୍ତିନାହିଁ । ଦୁଇଜଣଙ୍କୁ ବାଡ଼େଇ ବାଡେଇ ମାରିଦେଇଛନ୍ତି । ସେମିତିକା ଗୋଟେ ଲୋକ ପାଖରେ ଚାକିରି କରିବେ ବୋଲି ସ୍ଥିରକରିଛନ୍ତି !"

—"କଣ କରିବି ? ସେ ମୋତେ ବାର୍ଷିକ ତିନିହଜାର ରୁବେଲ ଦରମା ଦେଉଛନ୍ତି । ମୋ ବୁଢ଼ୀମା' ପାଇଁ ଟଙ୍କା ଦରକାର । ମୁଁ ମୋ ଦରମାରୁ ଅଧେ ତାଙ୍କୁ ଦେବି—ବାକି ଅଧିକ ରଖିବି । ବେଶୀ ଟଙ୍କା ହୋଇଗଲେ ପଳାଇଯାଇ ସ୍ୱାଧୀନ ଭାବରେ ପ୍ୟାରିସ୍‌ରେ ବ୍ୟବସାୟ କରିବି ।"

"ଟ୍ରୋସ୍କୁରୋଭଙ୍କ ଘରେ ଆପଣଙ୍କୁ କିଏ ଚିହ୍ନିଛି ?"

—ନାଁ, ମସ୍କୋର ମୋର ଜଣେ ବନ୍ଧୁ ଏହି ଭଦ୍ରଲୋକଙ୍କ ଟିଉସନ୍ ଧନ୍ଦା ବିଷୟରେ ଲେଖିଥିଲେ ।

—ମୁଁ ଆପଣଙ୍କୁ ଦଶହଜାର ରୁବେଲ ଦେଉଛି—ଆପଣ ପ୍ୟାରିସ୍‌ରେ

ବ୍ୟବସାୟ କରନ୍ତୁ । ମୋ କଥା ଶୁଣନ୍ତୁ—ସେଠାକୁ ଯାଆନ୍ତୁ ନାହିଁ ।’

ଏହା ଶୁଣି ଫ୍ରେଞ୍ଚ ଯୁବକ ଜଣକ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲେ ଓ ହସିଦେଇ ମୁଣ୍ଡ ହଲାଇଲେ ।

“ମୋ ଘୋଡ଼ା ପ୍ରସ୍ତୁତ ଅଛି । ମୁଁ ଥଟ୍ଟା କରୁନାହିଁ ।” ଏହା କହିବା ସାଙ୍ଗେ ସାଙ୍ଗେ ଘର ଭିତରକୁ ଯାଇ ଦଶହଜାର ରୁବେଲ ନେଇ ଆସିଲେ । କହିଲେ—“ଏଇ ନିଅନ୍ତୁ । ସେ ସାର୍ଟିଫିକେଟଗୁଡ଼ିକ ମୋତେ ଦେଇଦିଅନ୍ତୁ । ଏ ରୁବେଲତକ ନିଅନ୍ତୁ ।”

ଫ୍ରେଞ୍ଚ ଯୁବକଟି ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଚାହିଁରହିଲେ ! ସେ କିଛି ବିଶ୍ୱାସ କରିପାରୁନଥିଲେ । କିଛିଏ ପରେ ପଚାରିଲେ—“ମୋ ପାସ୍‌ପୋର୍ଟ ଓ ଅନ୍ୟାନ୍ୟ କାଗଜପତ୍ର ?”

ଯୁବକ କହିଲା—ହେଇ ରୁବେଲ୍, ଧର ଓ ସିଧା ଯାଅ । ହଁ—ଆମ ଦୁଇଜଣଙ୍କ ଛଡ଼ା ଆଉ କେହି ଯେପରି ଏକଥା ନ ଜାଣନ୍ତି ।

—“ସେ ଜବାବ ଦେଉଛି । ମୋ କାଗଜପତ୍ର ?”

—“ପାଖ ସହରରେ ପହଞ୍ଚିବା ମାତ୍ରେ କହିଦେବେ ଯେ ଡୁବ୍ରୋଭସ୍କି ମୋ କାଗଜପତ୍ର ସବୁ ନେଇଯାଇଛି । ସେ ବିଷୟରେ କେହି ଅବିଶ୍ୱାସ କରିବେ ନାହିଁ । ମା’ଙ୍କର ଯତ୍ନ ନିଅ ।” ଡୁବ୍ରୋଭସ୍କି ଗାଡ଼ିରେ ବସି ଚାଲିଗଲେ ।

ପୋଷ୍ଟମାଷ୍ଟର ଟରକା ବାଟେ ଚାହିଁଥିଲେ । ଡୁବ୍ରୋଭସ୍କି ଅଦୃଶ୍ୟ ହୋଇଗଲା ପରେ ସେ ତାଙ୍କ ସ୍ତ୍ରୀଙ୍କୁ କହିଲେ, “ଜାଣିଛ ସେ କିଏ ? ସେ ଡୁବ୍ରୋଭସ୍କି ।” ତାଙ୍କ ସ୍ତ୍ରୀ ଶୁଣିବା ମାତ୍ରକେ ଝରକା ନିକଟକୁ ଦୌଡ଼ି-ଗଲେ । ସେତେବେଳକୁ ଡୁବ୍ରୋଭସ୍କି ଅନେକ ଦୂର ଚାଲିଯାଇଥିଲେ ।

—“ତୁମେ ବଡ଼ ଖରାପ ଲୋକ । ମୋତେ ଆଗରୁ କାହିଁକି କହିଲ-ନାହିଁ—ମୁଁ କିଛିଏ ଦେଖିଥାନ୍ତି । କିଏ ଜାଣେ ସେ ଏପଟେ ପୁଣି ଫେରିବ କି ନାହିଁ ? ତୁମକୁ କିବେ ଲଜ୍ଜା ନାହିଁ ?”

ଅଚଳ ଭାବରେ ଫ୍ରେଞ୍ଚ ଯୁବକଟି ସେମିତ ଠିଆହୋଇଥିଲେ । ଅଫିସର ସହିତ ହୋଇଥିବା ଚୁକ୍ତି, ଅର୍ଥ ଓ ସମସ୍ତ କଥୋପକଥନ ତାଙ୍କୁ ସ୍ୱପ୍ନଭଳି

ଜଣାପଡ଼ୁଥିଲା । ଘଟିଯାଇଥିବା ସେହି ଘଟଣାର ସାକ୍ଷୀସ୍ୱରୂପ କୋର୍ଟ୍ ବଡ଼ା ହିଁ ତା ପାଖରେ ଥିଲା । ସେ ତାଙ୍କର ମନକୁ ପ୍ରସ୍ତୁତ କରି ନେଲେ । ବୁଝିପାରିଲେ ଯେ ଘୋଡ଼ାକୁ ତା' ମନ ଇଚ୍ଛା ବ୍ୟବହାର କରିପାରିବେ । ସନ୍ଧ୍ୟା ସମୟକୁ ସେ ସହରରେ ପହଞ୍ଚିଲେ ।

ଚେକ୍‌ଗେଟ୍ ପାଖରେ ଘୋଡ଼ାଗାଡ଼ିରୁ ଓହ୍ଲାଇପଡ଼ିଲେ ଓ ଚାଲି ଚାଲି ଆଗକୁ ଗଲେ । ସେଠାରେ ଗାଡ଼ି ଘୋଡ଼ାର କୌଣସି ଚିହ୍ନ ନଥିଲା । ତେଣୁ ସାରି ରାତି ସେଠାରେ ଅପେକ୍ଷା କରିବାକୁ ପଡ଼ିଲା । ସକାଳୁ ଆଖି ତାଙ୍କର ନାଲିପଡ଼ିଯାଇଥିଲା । ସେ ପୁନର୍ବାର ନିଜ ସ୍ଥାନକୁ ଫେରିଆସିଲେ ।

ସେ ବିଷୟରେ କେହି କିଛି ଜାଣିପାରିଲେ ନାହିଁ । ସେ ମାଶାର ଗୀତ ଓ ପାଠ ବିଷୟରେ ଅଧିକ ଯତ୍ନ ନେଉଥିଲେ ! ଘରର ପ୍ରତ୍ୟେକ ବ୍ୟକ୍ତି ସହିତ ଖୁବ୍ ଭଦ୍ର ବ୍ୟବହାର ଦେଖାଉଥିଲେ । ସେଥିପାଇଁ ପ୍ରତ୍ୟେକ ଲୋକ ତାଙ୍କୁ ଶ୍ରଦ୍ଧା କରୁଥିଲେ ଏବଂ ତାର ସାହସ ପାଇଁ ଟ୍ରୟୋକୁରୋଭ ତାଙ୍କୁ ଶିକାର ସମୟରେ ସାଙ୍ଗରେ ନେଉଥିଲେ । ଏହିଭଳି ସୁସ୍ଥ ବାତାବରଣ ଭିତରେ ଏକମାସ ସମୟ କଟିଗଲା । କୌଣସି ବ୍ୟକ୍ତିର ତାଙ୍କ ଉପରେ ଅଣୁମାତ୍ର ସନ୍ଦେହ ନଥିଲା । ଟିଉଟରର ଛଦ୍ମବେଶରେ ସେ ଯେ ଏତେ ବଡ଼ କାମ କରିପାରିଥିଲେ, ସେକଥା କେହି ଜାଣିପାରିଲେ ନାହିଁ । ପରବର୍ତ୍ତୀ ଦିନ ସକାଳ ୯ଟା । ଚା ପର୍ବ ସରିଯିବା ପରେ ଜଣେ ଜଣେ ହୋଇ ନିଜନିଜର ଗାଡ଼ି ଧରି ଚାଲିଗଲେ ।

## ଦ୍ୱାଦଶ ଅଧ୍ୟାୟ

ସମୟ ତାର ଗତାନୁଗତିକ ବାଟରେ ଆଗେଇ ଚାଲିଲା । କିରିଲା ପେଟ୍ରୋଭିଚ୍‌ଙ୍କ ଗ୍ରାମଲୋକଙ୍କ ଜୀବନଧାରା ସାଧାରଣ ପଥରେ ଗଡ଼ିଚାଲିଥିଲା । ମାଶାର ମଧ୍ୟ ଟିଉଟର ଉପରେ ବିଶ୍ୱାସ ଜମିଉଠିଲା । ସେ ତାଙ୍କୁ ଅନ୍ତର

ଭିତରେ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଭଲପାଇବସିଲି । ଟିଉଟରଙ୍କର ଅନୁପସ୍ଥିତି ତା ପକ୍ଷେ ଅସହ୍ୟ ହେଲା ଏବଂ ତାଙ୍କ ଉପସ୍ଥିତିରେ ସେ ଏକରକମ ଅନ୍ୟ ସମସ୍ତଙ୍କୁ ଭୁଲିଗଲା ।

ଦିନକର ଘଟଣା । ତା ଟିଉଟର ଅପେକ୍ଷା କରିଥିବା ଗୃହ ଭିତରକୁ ସେ ପ୍ରବେଶକଲା । ସେ ଗୃହ ଭିତରକୁ ପ୍ରବେଶ କରିବା ମାତ୍ରକେ ପିଆନୋକୁ ଧରିଥିବା ଟିଉଟରଙ୍କୁ ଦେଖିଲା ଏବଂ ଗୀତଖାତାଟିକୁ ନେବା ସମୟରେ ସେଥିରେ ଲେଖାଯାଇଥିବା ଘଟଣା ପଢ଼ିଲା । ସେହି ସମୟରେ ଡୁବ୍ରୋଭସ୍କି ନିଜ ମୁଣ୍ଡରେ ଯନ୍ତ୍ରଣା ଅନୁଭବ କରୁଥିଲା ପରି ମୁଣ୍ଡକୁ ଧରି ସେ ଗୃହରୁ ବାହାରକୁ ଚାଲିଗଲେ । ଖାତାଟିକୁ ହାତରେ ଧରି ମାଶା ତା' ଶୋଇବାଘରକୁ ଗଲା ଓ ଖାତାରେ ଚିହ୍ନ ଦେଇଥିବା ସ୍ଥାନଟି ଖୋଲି ପଢ଼ିଲା—"ନଦୀକୂଳରେ ଥିବା ଗଛମୂଳେ ମୁଁ ତୁମକୁ କିଛି କହିବାକୁ ଚାହେଁ ।"

ଏହା ପାଠକରି ତା ବୁକୁତଳର ସାଇତା ଆଶା ଓ ଆକାଙ୍‌କ୍ଷା ଉଦ୍‌ବେଳିତ ହୋଇଉଠିଲା । ଅହେତୁକ ଏକ ଭୟ ମଧ୍ୟ ତାକୁ ଗ୍ରାସ-କରୁଥିଲା । ସମାଜର ଜଣେ ସାଧାରଣ ସ୍ଥିତିସମ୍ପନ୍ନ ବ୍ୟକ୍ତି କଥାରେ ଗୃହ ତ୍ୟାଗ କରି ଯିବାଟା ତା' ପକ୍ଷେ ଅନୁଚିତ । ତେଣୁ ସେ ମନକୁ ବୁଝାଇବା ପାଇଁ ସାଙ୍ଗମାନଙ୍କ ସହିତ ଗପିଲା । ସନ୍ଧ୍ୟା ଆସିଲା । ମହମବତିଗୁଡ଼ିକ ଜଳିଉଠି ଅନ୍ଧାର ଘରକୁ ଆଲୋକିତ କଲା । ଘଣ୍ଟା ଟିକ୍‌ଟିକ୍ କରି ଆଗେଇ ଚାଲିଲା । ସାତଟା ବାଜିବାକୁ ପନ୍ଦର ମିନଟ୍ ବାକି । ମାଶା ଆଉ ଅସ୍ଥ ହୋଇ ରହିପାରିଲା ନାହିଁ । ପ୍ରେମର ମଧୁର ଧାରା ତା ଅନ୍ତରରେ ସାହସ ଆଣିଦେଲା । ସେ ବନ୍ଧୁ ଗହଣରୁ ଖୁବ୍ ସନ୍ତର୍ପଣରେ ଖସିଯାଇ ବଗିଚା ଭିତର ଦେଇ ରାସ୍ତାକୁ ବାହାରିଗଲା ।

ନିରନ୍ଧ୍ର ଅନ୍ଧକାର । ଆକାଶ ମେଘାଚ୍ଛନ୍ନ । ନିଜକୁ ମଧ୍ୟ ଦେଖିହେଉନଥାଏ । ତେବେ ପରିଚିତ ବାଟ ଯୋଗୁଁ ସେ ଶୀଘ୍ର ଶୀଘ୍ର ଚାଲି ନଦୀକୂଳରେ ପହଞ୍ଚି ସେଇ ଗଛ ନିକଟରେ ଠିଆହେଲା ।

"ମୋ ଅନୁରୋଧ ତୁମେ ରକ୍ଷାକରିଛ—ଧନ୍ୟବାଦ । ଯଦି ଆସିନଥାନ୍ତ

ତେବେ ମୋତେ ଖୁସ୍‌ଣ କଷ୍ଟ ଲଗିଥାନ୍ତା ।'' —ଅନୁଚ୍ଚ କଣ୍ଠରେ ଟିଉଣ୍ଟର କହିଲେ ।

—''ମୁଁ ଆସିବାକୁ ପ୍ରସ୍ତୁତ ହେଉଥିଲି । ତୁମ ଉପରେ ମୋର ପ୍ରଗାଢ଼ ବିଶ୍ୱାସ—ନ ଆସିବି କେମିତି ?''

ସାହସ ସଞ୍ଚୟକରି ସେ କହିଲେ, ''ତୁମକୁ ଛାଡ଼ିବାକୁ ପରିସ୍ଥିତି ମୋତେ ବାଧ୍ୟକଲା । ମୋତେ ତୁମକୁ ନିଶ୍ଚୟ ଛାଡ଼ିବାକୁ ପଡ଼ିବ । ତୁମେ ପରେ ସେ କଥା ଜାଣିବ । କିନ୍ତୁ ଯିବା ପୂର୍ବରୁ ମୁଁ ତୁମକୁ ସବୁ କଥା ଖୋଲି କହିଦେବି । ତୁମେ ଯାହା ଭାବୁଛ ମୁଁ ତାହା ନୁହେଁ । ମୁଁ ତୁମର ଗୃହଶିକ୍ଷକ ଫ୍ରେଞ୍ଚମ୍ୟାନ ନୁହେଁ । ମୁଁ ଡୁବ୍ରୋଭସ୍କି ।'

ମାରିଆ ଚିତ୍କାରକରିଉଠିଲା ।

ଡୁବ୍ରୋଭସ୍କି କହିଲା—''ମୁଁ ଅନୁରୋଧ କରୁଛି, ମୋ ନାମ ଶୁଣି ତୁମେ ଡରନାହିଁ । ମୁଁ ତୁମର କିଛି କ୍ଷତି କରିବି ନାହିଁ । ମୋ କଥା ଶୁଣ । ମୁଁ ହେଉଛି ସେହି ହତଭାଗ୍ୟ ଯାହାର ସମସ୍ତ ପୈତୃକ ସମ୍ପତ୍ତି ତୁମ ବାପା ଅନ୍ୟାୟରେ ଅଧିକାର କରିଛନ୍ତି । ମୁଁ ତାଙ୍କୁ କ୍ଷମାଦେଇଛି । ତାଙ୍କର କିଛି କ୍ଷତି କରିବି ନାହିଁ । ମୋର ପ୍ରଥମ ଶପଥ ଥିଲା ତାଙ୍କର ରକ୍ତ । କିନ୍ତୁ ତୁମେ ମୋ ଅନ୍ତରରେ ଜଳୁଥିବା ପ୍ରତିଶୋଧର ପ୍ରବଳ ବହ୍ନିଶିଖାକୁ ନିର୍ବାପିତ କଲି ଓ ମୋତେ ତୁମର ସେ ଶୀତଳ ସ୍ପର୍ଶରେ ନମ୍ର କରିଦେଲି । ମୋର ସମସ୍ତ ପୈତୃକ ସମ୍ପତ୍ତି ତୁମ ପିତା ଅନ୍ୟାୟରେ ଦଖଲ କଲାପରେ ମୁଁ ବଣ ଜଙ୍ଗଲରେ ଘୂରିବୁଲିଲି । ଶେଷରେ ଏକ ସୁଯୋଗ ମୋ ପାଇଁ ଆସିଲା । ମୁଁ ତୁମ ଘରେ ତିନି ସପ୍ତାହ ପାଇଁ ରହିଲି । ସେହି ମଧୁମୟ ଅଭୁଲା ଦିନ-ଗୁଡ଼ିକୁ ମୁଁ କେବେ ଭୁଲିପାରିବି ନାହିଁ । ମୋ କଥା ଥରେ ଭାବିଲି ଦେଖ !''

ହଠାତ୍ ଧୀର ହୁଇସିଲର ଶବ୍ଦ ଶୁଣି ଡୁବ୍ରୋଭସ୍କି କଥା ବନ୍ଦ କଲେ । ଅତି ଆଗ୍ରହ ଓ ଉଦ୍‌ବେଗମୟ ପରିସ୍ଥିତିରେ ସେ ମାରିଆର ହାତକୁ ଧରିନେଲେ ଓ ଅତୃପ୍ତ ଓଷ୍ଠାଧାରରେ ଚୁମ୍ବନଟିଏ ଆଙ୍କିଦେଲେ । ଦ୍ୱିତୀୟ ଥର ହୁଇସିଲ ବାଜିଉଠିଲା ।

ଡୁବ୍ରୋଭସ୍କି କହିଲା—"ମୋତେ କ୍ଷମାକର । ମୁହୂର୍ତ୍ତିକର ବ୍ୟତକ୍ରମରେ ମୁଁ ଧ୍ୱଂସହୋଇଯିବି ।" ଡୁବ୍ରୋଭସ୍କି ଏତକ କହିସାରି କେତେ ପାଦ ଆଗେଇଯିବାପରେ ପୁଣି ଫେରଆସି ନତୀଜା ହୋଇ ଠିଆହୋଇ ମାରିଆର ହାତ ଧରିଲେ ଏବଂ ଶୋକଗଦ୍‌ଗଦ କଣ୍ଠରେ କହିଲେ, "ଯଦି କେବେ ବିପଦ ଆସେ ଏବଂ ମୋ ଉପରେ ତୁମର ଭରସା ଥାଏ ତେବେ ମୋତେ ସ୍ମରଣ କରିବ । ତୁମେ କ'ଣ ମୋ ଅନୁରାଗକୁ ମନେପକାଇବ-ନାହିଁ ?"

ମାରିଆ ନୀରବରେ କାନ୍ଦ ପକାଇଲା । କୃତାସ୍ଥ ଥର ପାର୍ଶ୍ୱ ହୁଇସିଲ ବାଜିଉଠିଲା ।

ଡୁବ୍ରୋଭସ୍କି କହିଲେ—"ମୋର ମୃତ୍ୟୁ କଣ ତୁମେ ଚାହଁ ? ତୁମ ମୁହଁରୁ ପଦେ କଥା ନ ଶୁଣିବା ପର୍ଯ୍ୟନ୍ତ ମୁଁ ତୁମକୁ ଛାଡ଼ି ଯାଇପାରିବି ନାହିଁ । କହିବ ନାହିଁ ?"

ଧୀର କଣ୍ଠରେ ଅସହାୟ ଭାବେ ମାରିଆ କହିଲା, "ମୁଁ କଥା ଦେଉଛି, ତୁମେ ହିଁ ମୋର ଏକାନ୍ତ ଭାବେ ନିଜର ।"

ମିଳନ ସ୍ଥାନ ଆଡ଼କୁ ଅନେକ ଲୋକ ଆସୁଥିବାର ପାଟି ଶୁଣି ମାରିଆ ଖୁବ୍ ଶୀଘ୍ର ତାଙ୍କର ବଗିଚା ଭିତରକୁ ପଶିଗଲା । ଘର ଭିତରେ ଖୁବ୍ କୋଳାହଳ ଶୁଭୁଥାଏ । ବଗିଚାରେ ଲୋକ ଭର୍ତ୍ତିହୋଇ ଗଲେଣି । କେତେକ ଗାଡ଼ି ପ୍ରସ୍ତୁତ ହୋଇଗଲାଣି । ଦୂରରୁ ତା ବାପାଙ୍କ ପାଟି ଶୁଭୁଥିଲା । ପୋଲିସ ଅଫିସରଙ୍କ ସହ ଅନ୍ୟମାନେ ପ୍ରସ୍ତୁତ ହୋଇ ବସିଥିଲେ । ମାରିଆକୁ ଦେଖି ତା ବାପା ପଚାରିଲେ, "ମାଶା, ତୁ କେଉଁଠି ଥିଲୁ ? ତୁ ସେ ଡୁବ୍ରୋଭସ୍କିର ହାତୁଡ଼ରେ ପଡ଼ିଯାଇଥିଲୁ କି ? ତାକୁ ଦେଖିଛୁ ?"

ମାରିଆ କହିଲା—ନାଁ ।

ପରିହାସ କରି କହିଲା ପେଟ୍ରୋଭିଚ୍ କହିଲେ, "କ୍ୟାପ୍‌ଟେନ୍ ତାକୁ ଡୁବ୍ରୋଭସ୍କି କହି ଗିରଫ କରିବାକୁ ଆସିଥିଲେ ।"

କ୍ୟାପ୍‌ଟେନ୍ କହିଲେ—"ଅବିକଳ ସେମିତି ।"

କରେଲ୍ କହିଲେ—"ମୁଁ ନିଜେ ଘଟଣା ବିଷୟରେ ପୂର୍ଣ୍ଣ ଅବଗତ ନହେବା ପର୍ଯ୍ୟନ୍ତ ମୋ ଫ୍ରେଣ୍ଡମ୍ୟାନକୁ ତୁମକୁ ଦେଇପାରିବି ନାହିଁ । ମୁଁ କେମିତି ବିଶ୍ୱାସ କରିବି ଯେ ଆଣ୍ଟୋନକୁ ସେ ମାରିଛି ? ସେ ହୁଏତ ସ୍ୱପ୍ନ ଦେଖିଥିବ । କାହିଁ ମୋତେ ସେଦିନ ସକାଳେ ସେ କିଛି କହିଲା ନାହିଁ ?"

କ୍ୟାପଟେନ୍ କହିଲେ—"ସେ ମୋତେ କହିଥିଲା ।" କରେଲ୍—କାହିଁକି ମିଛ କହୁଛ ! ତୁହ ମୁଁ ବୁଝୁଛି । ଟିଲ୍‌ଟର କାହିଁ ?"

ପରିଚାରକ ତତ୍‌କ୍ଷଣାତ୍ ଟିଲ୍‌ଟର ନଥିବା ଖବର ଜଣାଇଦେଲା । କରେଲ୍ କ୍ରୋଧରେ ଚିତ୍କାର କରି କହିଲେ, "ତାକୁ ଖୋଜ । କ୍ୟାପଟେନ୍, ସେ କାଗଜପତ୍ର ମୋତେ ଦେଖାଅ ।"

କ୍ୟାପଟେନ କାଗଜ ଦେଖାଇଲେ । ତା ଉପରେ ଆଖି ବୁଲାଇନେଇ କରେଲ୍ କହିଲେ—ତେଇଶି ବର୍ଷ······ଏତିକି ଠିକ୍ । ଆଉ ତ କିଛି ମିଳୁନାହିଁ ? ହେଲେ ସେ ଟିଲ୍‌ଟର କାହିଁ ?"

ପରିଚାରକ—'ସେ କେଉଁଠାରେ ନାହାନ୍ତି ।'

କରେଲ ଝିଅକୁ ଚାହିଁ ପଚାରିଲେ—"ମାଶା, ତୁ କାହିଁକି ଶୁଖିଲା ଦେଖାଯାଉଛୁ ? ସେମାନେ ତୋତେ ଡରାଇଦେଲେଣି ବୋଧେ ?"

ମାରିଆ କହିଲା—"ନାଁ ପାପା, ମୁଣ୍ଡ ବିନ୍ଧୁଛି ।"

କରେଲ ସହାନୁଭୂତିର ସହ କହିଲେ—"ବ୍ୟସ୍ତ ହୁଅନା, ତୁ ଯା ।"

ମାଶା ତରତର ହୋଇ ତା' ବେଡ୍‌ରୁମ୍‌କୁ ପଶିଗଲା ଓ ଖଟ ଉପରେ ଶୋଇ ଅସହାୟଭାବେ କାନ୍ଦିବାକୁ ଲାଗିଲା । ଏହା ଦେଖି ପରିଚାରିକାମାନେ ତା' ନିକଟକୁ ଧାଇଁଗଲେ ଓ ତାକୁ ଚେତା କରାଇବା ପାଇଁ ସ୍ମେଲିଂସଲ୍‌ଟ ଓ ଥଣ୍ଡାପାଣି ବ୍ୟବହାର କଲେ । ତା'ର ଫିଙ୍କା ଫେରି ଆସିବା ପରେ ତା ପୋଷାକ ବଦଳାଇଦେଲେ ଏବଂ ସେ ନିଦରେ ଶୋଇଗଲା ।

ଫ୍ରେଣ୍ଡମ୍ୟାନକୁ ଖୋଜି କେହି ପାଇଲେ ନାହିଁ । ତେବେ ହୁଇସିଲ୍ ବଜାଇ ସମସ୍ତଙ୍କୁ ସତର୍କ କରାଇଦେଲେ ।

ରାତି ଏଗାର । କାହାରି ଆଖିରେ ନିଦ ନାହିଁ । ସମସ୍ତେ ଭୟଭୀତ । କରେଲ୍ ସେଣ୍ଟ୍ରୋଇଡ଼୍ ସମସ୍ତଙ୍କୁ ବୁଲିଯିବାକୁ ଆଦେଶ ଦେଲେ ।

# ତ୍ରୟୋଦଶ ଅଧ୍ୟାୟ

ଘଟଣାସ୍ଥାନ ସ୍ଥବରେ ଦିନଗୁଡ଼ିକ ଗଡ଼ି ଚାଲିଲା । ଶୀଘ୍ର ହିଁ ଆସିଲା କର୍ନଲ ପେଟ୍ରୋଭିଚ୍‌ଙ୍କ ପାରିବାରିକ ଜୀବନରେ ପରିବର୍ତ୍ତନ ନେଇ । ଦୀର୍ଘ ତିରିଶ ବର୍ଷ ପରେ ଆରବାଟୋଭୋର ରାଜକୁମାର ନିଜ ରାଜ୍ୟକୁ ଫେରିଲେ । ସେ ତାଙ୍କ ରାଜ୍ୟଭାର ଜଣେ ଅବସରପ୍ରାପ୍ତ ମେଜରଙ୍କୁ ଦେଇ ବିଦେଶରେ ଅବସ୍ଥାନ କରୁଥିଲେ । କର୍ନଲ ପେଟ୍ରୋଭିଚ୍‌ଙ୍କ ଗ୍ରାମ ପୋକ୍ରୋଭସ୍କୋ ଓ ଆରବାଟୋଭୋ ମଧ୍ୟରେ ଯାତାୟାତର କୌଣସି ସୁବିଧା ନଥିଲା । ରାଜକୁମାର ପିଲାଦିନରୁ ଗ୍ରାମ୍ୟଜୀବନ ସହିତ କୌଣସି ସମ୍ପର୍କ ରଖିନଥିଲେ ମୁଦ୍ଧା ସେ ମେ ମାସ ଶେଷବେଳକୁ ଗାଆଁକୁ ଫେରିଆସିଲେ । ବିଳାସର ପ୍ରାଚୁର୍ଯ୍ୟ ଭିତରେ ଗଢ଼ିଉଠିଥିଲା ତାଙ୍କର ସହରୀ ଜୀବନ । ତେଣୁ ଗ୍ରାମ୍ୟଜୀବନର ନିଃସଙ୍ଗତା ମଧ୍ୟରେ ସେ ଶ୍ୱାସରୁଦ୍ଧ ହୋଇଉଠିଲେ । ତେଣୁ ସେ ସଙ୍ଗହୀନତାର ବିରକ୍ତିରୁ ରକ୍ଷାପାଇବାପାଇଁ ଅନେକ ପୂର୍ବରୁ ପରିଚିତ ଥିବା କର୍ନଲ ଟ୍ରେଏକୁରୋଭଙ୍କୁ ନିମନ୍ତ୍ରଣ ଜଣାଇଲେ ।

ସେହି ରାଜକୁମାରଙ୍କୁ ପ୍ରାୟ ପଚାଶ ବର୍ଷ ବୟସ ହେବ । କିନ୍ତୁ ଏହି ବୟସ ତୁଳନାରେ ସେ ଅଧିକ ବୃଦ୍ଧ ଦେଖାଯାଉଥିଲେ । ତା ସତ୍ତ୍ୱେ ତାଙ୍କର ହସହସ ମୁଖମଣ୍ଡଳ ଓ କଥୋପକଥନର ଢଙ୍ଗ ଯୋଗୁ ସେ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ରୂପେ ବାରିହେଉଥିଲେ । ବିଶେଷତଃ ହେଲା ସେ ସ୍ତ୍ରୀ ଲୋକଙ୍କର ପ୍ରିୟ ହୋଇପାରିଥିଲେ । କର୍ନଲ ପେଟ୍ରୋଭିଚ୍ ରାଜକୁମାରଙ୍କ ଆଗମନରେ ଖୁବ୍ ଆନନ୍ଦିତ ହୋଇଥିଲେ । ସେ ଆନନ୍ଦ ମନରେ ତାଙ୍କ ଅଧିକୃତ ଅଞ୍ଚଳଗୁଡ଼ିକ ରାଜକୁମାରଙ୍କୁ ବୁଲାଇ ଦେଖାଇଲେ । କିନ୍ତୁ ରାଜକୁମାର କର୍ନଲଙ୍କ ପୋଷା କୁକୁରଗୁଡ଼ିକୁ ଦେଖିଲାବେଳେ ବଡ଼ ଅସ୍ୱସ୍ତି ବୋଧକଲେ ଓ ଦୁର୍ଗନ୍ଧ ଯୋଗୁ ହାତ ପରଫିଉମ ବ୍ୟବହୃତ ରୁମାଲରେ ନାକ ବନ୍ଦକଲେ । କର୍ନଲଙ୍କର ସେହି ପୁରୁଣାକାଳିଆ ବଗିଚା ଦେଖି ତାଙ୍କ ମନରେ ଅରୁଚି ଆସୁଥିଲେ ମଧ୍ୟ ସେ ତାଙ୍କ ଆଗରେ ବଗିଚାର ପ୍ରଶଂସା କଲେ । ସେହି ସମୟରେ ପରିଷ୍କାରକଦ୍ୱାରା ଆହୂତ ହୋଇ

ସେମାନେ ଭୋଜନକକ୍ଷରେ ପ୍ରବେଶ କରିଥାନ୍ତି ।

ରାଜକୁମାର ସେଠାରେ ପ୍ରବେଶ କରିବା ମାତ୍ରକେ ମାରିଆ କରଲେ-ଭନାକୁ ଦେଖିଲେ ଏବଂ ସେହି ବୃଦ୍ଧ ରାଜକୁମାର ମାରିଆର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହେଲେ । ସେ ମାରିଆ ନିକଟରେ ବସିଲେ ଓ ବସିବା ମାତ୍ରକେ ରାଜକୁମାରଙ୍କ ହୃଦୟରେ ପୂର୍ବପୁରୁଷ ଚପଳତା ସୃଷ୍ଟିହେଲା । ଫଳରେ ହାସ୍ୟ ସୃଷ୍ଟି କଲାଭଳି ଘଟଣାବଳୀ ତା' ଆଗରେ କହି ମାରିଆର ମନକୁ ଆକୃଷ୍ଟ କରିବାକୁ ଚେଷ୍ଟାକଲେ । ହାସ୍ୟଉଦ୍ଦୀପକ କଥାବାର୍ତ୍ତା ଭିତରେ ସେମାନଙ୍କର ଭୋଜନପର୍ବ ଶେଷ ହେଲା । ଏହାପରେ ଘୋଡ଼ାଗାଡ଼ିରେ ବସି ବିଭିନ୍ନ ସ୍ଥାନ ବୁଲିବାକୁ ସ୍ଥିର କରାଗଲା । କରଲା, ମାରିଆ ଓ ରାଜକୁମାର ଭେରେସ୍କି ଗୋଟିଏ ଗାଡ଼ିରେ ବସି ବୁଲିବାହାରିଲେ । ଖୁବ୍ ଆନନ୍ଦ ମନରେ ନାନାପ୍ରକାର ମଜା କଥା କହି ଭେରେସ୍କି ସେମାନଙ୍କୁ ଖୁସିକରାଉଥିଲେ । ଠିକ୍ ସେହି ସମୟରେ ଭେରେସ୍କି ଘର ଜଳିଯିବାର ଏକ ଦୃଶ୍ୟ କରଲାଙ୍କୁ ଦେଖାଇ ତା'ର କାରଣ ପଚାରିଲେ । ଏ ଦୃଶ୍ୟ ଦେଖିବା ମାତ୍ରକେ କରଲା ପେଟ୍ରୋଭିଚ୍ ରାଗିଉଠିଲେ ଏବଂ କହିଲେ, 'ତାହା ଆଗେ ଡୁବ୍ରୋଭସ୍କି ଅଧୀନରେ ଥିଲା—ବର୍ତ୍ତମାନ ମୋ ଅଧୀନରେ ଅଛି ।'

ଚମକିପଡ଼ି ଭେରେସ୍କି କହିଲେ—"ଡୁବ୍ରୋଭସ୍କି—ସେ କୁଖ୍ୟାତ ଡକାୟତ ?"

"ତା ବାପା ମଧ୍ୟ ତା'ଭଳି ଜଣେ ଖରାପ ଲୋକ ଥିଲେ ।"—କରଲା ଉତ୍ତର ଦେଲେ ।

ଭେରେସ୍କି—"କ'ଣ ହେଲା ତା'ର ? ସେ କଣ ବଞ୍ଚିଛି ? ଏ ପର୍ଯ୍ୟନ୍ତ ଧରାପଡ଼ିନାହିଁ ?"

କରଲା—"ହଁ ବଞ୍ଚିଛି । ଆମ ପୋଲିସ ଅନୁସନ୍ଧାନ କରୁଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ତାକୁ ଧରିପାରିନାହାନ୍ତି । ଗତ ବର୍ଷ ଆପଣମାନେ ତା' ହାତୁଡରେ ପଡ଼ିଥିଲେ—ଏହା ସତ ନା ?"

ଭେରେସ୍କି—"ହଁ, ବିଗତ ବର୍ଷ ସେ କେତେଗୁଡିଏ ଘର ଜାଳି-ଦେଇଥିଲା ଓ ଧନଲୁଣ୍ଠନ କରି ନେଇଥିଲା । ହଁ, ଗୋଟାଏ ମଜାକଥା

ଶୁଣିଥିଲି—ମାରିଆଙ୍କୁ କୁଆଡ଼େ ସେହି ରୋମାଣ୍ଟିକ ହ୍ରଦରେ ନେଇ-ଯାଇଥିଲି ?"

କାରଲ ଟ୍ରୋସ୍କିଭେଭ କହିଲେ—"ମଜାକଥା କ'ଣ ? ମାରିଆ ତାକୁ ଜାଣେ । ସେ ତିନି ସପ୍ତାହ ଧରି ତାକୁ ସଙ୍ଗୀତ ଶିକ୍ଷା ଦେଉଥିଲି । ପ୍ରଭୁଙ୍କୁ ଧନ୍ୟବାଦ—ସେ ମୋର ପଇସାଟିଏ ବି ନେଇନାହିଁ ।" ତା'ପରେ ସେ ଘଟିଯାଇଥିବା ସବୁ ଘଟଣା ଗୋଟି ଗୋଟି କରି କହିଗଲେ । ଭେରେସ୍କି ଖୁବ୍ ଆଗ୍ରହରେ ସବୁ ଶୁଣିଲେ ଏବଂ ତାଙ୍କ ଭ୍ରମଣ ସାରିବା ପରେ ସ୍କ' ଯାନ କରିସାରି ନିଜ ଅଞ୍ଚଳକୁ ଫେରିବା ସମୟରେ ସେମାନଙ୍କୁ ନିଜ ଘରକୁ ନିମନ୍ତ୍ରଣ କଲେ । ଭେରେସ୍କିର ଅମାପ ସମ୍ପତ୍ତି ଥିବା ଜାଣି ଟ୍ରୋସ୍କିଭେଭ ତାଙ୍କୁ ସମ୍ମାନାସ୍ପଦ ମନେକଲେ । ତେଣୁ ତାଙ୍କ ନିମନ୍ତ୍ରଣ ସମାଦରରେ ଗ୍ରହଣକଲେ ।

ଦୁଇଦିନ ପରେ କାରଲ ପେଟ୍ରୋଭିଚ ଓ ତାଙ୍କ ଝିଅ ବନ୍ଧୁତ୍ୱପୂର୍ଣ୍ଣ ଭ୍ରମଣ ପାଇଁ ଭେରେସ୍କିଙ୍କ ଘରକୁ ଗଲେ । ଆର୍ଭାଟୋଭେ ଗ୍ରାମରେ ପହଞ୍ଚିବା ମାତ୍ରକେ ଗ୍ରାମର ପରିଷ୍କାର ପରିଚ୍ଛନ୍ନତା, ବର୍ଗାକାରରେ ସୁସଜ୍ଜିତ ହୋଇ-ଥିବା କୃଷକମାନଙ୍କର ଘରଗୁଡ଼ିକ ଦେଖି ସେ ବହୁତ ଖୁସି ହେଲେ । ରାଜକୁମାରଙ୍କ ବାସଗୃହ ଇଂରେଜ ଜମିଦାରମାନଙ୍କର ଦୁର୍ଗ ଭଳି ସୁସଜ୍ଜିତ ହୋଇଥିଲା । ଗୃହ ସମ୍ମୁଖରେ ବିସ୍ତୀର୍ଣ୍ଣ ସବୁଜପ୍ରାନ୍ତର । ସେଠାରେ ଅନେକଗୁଡ଼ିଏ ଗାଈ ଚରୁଥିଲେ । ଗୃହର ଚାରିପାଖ ବିସ୍ତୀର୍ଣ୍ଣ ପାର୍କଦ୍ୱାରା ସୁଶୋଭିତ ହୋଇଥିଲା ।

ଅତିଥି କାରଲ ଓ ତାଙ୍କ ଝିଅ ମାରିଆଙ୍କୁ ଭେରେସ୍କି ସ୍ୱାଗତ ଜଣାଇସାରି ସେମାନଙ୍କୁ ସାଥିରେ ନେଇ ଏକ ସୁସଜ୍ଜିତ ଡାଇନିଂ ରୁମ୍‌ରେ ପ୍ରବେଶ କଲେ । ଏହି କୋଠରୀଟିର ପ୍ରତ୍ୟେକଟି ଦୃଶ୍ୟ ବେଶ୍ ମନୋମୁଗ୍ଧକର ହୋଇଥିଲା । ସେମାନେ ଝରକା ନିକଟରେ ଥିବା ଏକ ସୁନ୍ଦର ଡାଇନିଂ ଟେବୁଲରେ ବସିଲେ । ଅଦୂରରେ ନଦୀ ଓ ପାହାଡ଼ର ମନୋରମ ଦୃଶ୍ୟ ସେମାନଙ୍କୁ ବିଭୋର କରିଥିଲା । ଅପରପାର୍ଶ୍ୱରେ ଗ୍ରାମବାସୀଙ୍କ ଘର-ଗୁଡ଼ିକର ଛବି ବେଶ୍ ସୁନ୍ଦର ଦେଖାଯାଉଥିଲା । ଏଠାରେ କିଛି ସମୟ ବସିବା ପରେ ସେମାନେ ପିକ୍‌ଚର ଗ୍ୟାଲେରୀକୁ ପ୍ରବେଶ କଲେ । ଚିତ୍ର-

ଗୁଡ଼ିକ ମଧ୍ୟରୁ ଅଧିକାଂଶ ଚିତ୍ର ବିଦେଶରୁ କଣାଯାଇଥିଲା । ହ୍ୱାଇଟଅଙ୍କା ଚିତ୍ରଗୁଡ଼ିକ ମାରିଆକୁ ଦେଖାଇ ଭେରେସ୍କି ଚିତ୍ରଶିଳ୍ପୀଙ୍କ ଜୀବନୀ ବିଷୟରେ ନାନା କଥା କହି ବୁଝାଉଥିଲେ । ତାଙ୍କର ସମସ୍ତକଥା ମାରିଆ ଆନନ୍ଦ-ମନରେ ଶୁଣୁଥିଲେ । ଦ୍ରୋସ୍କଭେଭ ଭେରେସ୍କିଙ୍କର ଆତିଥେୟତାରେ ମୁଗ୍ଧ ଥିଲେ । କିନ୍ତୁ ମାରିଆ ଜୀବନରେ ଭେରେସ୍କି ଦ୍ୱିତୀୟ ପୁରୁଷ ଥିଲେ ସୁଦ୍ଧା ସେ ତାଙ୍କ ବିଷୟରେ ବିଶେଷ କିଛି ଚିନ୍ତା କରୁନଥିଲେ ।

ସେମାନେ ମଧ୍ୟାହ୍ନ ଭୋଜନ ଶେଷକଲେ । ଭୋଜନପର୍ବ ସରିବା ପରେ ଭେରେସ୍କି ତାଙ୍କର ଅତିଥିଦ୍ୱୟଙ୍କୁ ଫୁଲବଗିଚା ଦେଖାଇବାକୁ ଡାକି-ନେଲେ । ହ୍ରଦ କୂଳରେ ଥିବା କୁଞ୍ଜରେ ବସି ସେମାନେ କଫି ପାନକଲେ । ବଡ଼ ହ୍ରଦଟି ନିକଟରେ ଅନେକଗୁଡ଼ିଏ ଛୋଟ ଛୋଟ ହ୍ରଦ ଥିଲା । ହଠାତ୍ ବାଜା ସହ ଗୀତର ଆସର ଶୁଣାଗଲା ଏବଂ ଗୋଟିଏ ଛ'ଆହୁଲବିଶିଷ୍ଟ ଡଙ୍ଗା ସେ ବଡ଼ ହ୍ରଦରେ ପହଞ୍ଚିଲା । ହ୍ରଦରେ ବୁଲିବା ପାଇଁ ସେମାନେ ସେହି ଡଙ୍ଗାକୁ ଉଠିଲେ । ଡଙ୍ଗାଟି ମଧ୍ୟ ବେଶ୍ ସୁନ୍ଦର ଭାବେ ସଜାଯାଇଥିଲା । ସେମାନେ ଡଙ୍ଗାରେ ବସି ଛୋଟ ଛୋଟ ବଡ଼ ଅନେକଗୁଡ଼ିଏ ହ୍ରଦରେ ବୁଲିଲେ ।

ସମସ୍ତଙ୍କ ଅଜ୍ଞାତରେ ସୂର୍ଯ୍ୟ ପଶ୍ଚିମ ଆକାଶରେ ତଳକୁ ଖସିଆସିଥିଲେ । ଗୋଧୂଳିର ରକ୍ତାଭ କିରଣ ପୃଥିବୀ ବକ୍ଷରୁ ଆପସରି ଯିବାକୁ ବସିଥିଲା । ବୁନ୍ଦାବୁନ୍ଦା ଶିଶିର ପଡ଼ିବାକୁ ଆରମ୍ଭ କରିବା ମାତ୍ରକେ ରାଜକୁମାର ଭେରେସ୍କି ତାଙ୍କର ଅତିଥିଙ୍କୁ ଧରି ବାସଭବନକୁ ଫେରିଲେ । ବାସଭବନରେ ବସି ଚା'ପାନ କରିବା ବେଳେ କପ୍‌ରେ ଚା' ଢାଳିଦେବା-ପାଇଁ ସେ ମାରିଆକୁ ଅନୁରୋଧ କଲେ ଏବଂ ଅତିଥିପରାୟଣତା ଓ ଭଦ୍ରୋଚିତ ବ୍ୟବହାର ବିଷୟରେ ଅନେକ କଥା କହିଲେ ।

ହଠାତ୍ ତୋପର ଆବାଜ ହେଲା । ଆକାଶରେ ନାନାବିଧ ବାଣ ଜଳି ଉଠିବା ଦେଖାଗଲା । ରାଜକୁମାର ମାରିଆଙ୍କୁ ସାଲ ଉପହାର ଦେଲେ ଏବଂ ତାଙ୍କୁ ଓ ତାଙ୍କ ବାପାଙ୍କୁ ଘରର ବାଲ୍‌କୋନିକୁ ନିମନ୍ତ୍ରଣ କଲେ । ସେତେବେଳକୁ ଘର ସମ୍ମୁଖରେ ବିଭିନ୍ନ ରଙ୍ଗର ଆଲୋକ ଜଳିଉଠିଲା । ଆଲୋକର ପ୍ରତିଫଳନ ଯୋଗୁ କୃତ୍ରିମ ଝରଣାଗୁଡ଼ିକ ବେଶ୍ ମନୋରମ

ଦେଖାଯାଉଥିଲା । ମାଶିଆ ଠିକ୍ ଗୋଟିଏ ସରଳ ଗ୍ରାମ୍ୟ ବାଳିକା ଭଳି ଏ ଦୃଶ୍ୟ ଦେଖି ଆନନ୍ଦ ଅନୁଭବ କରୁଥିଲା । ରାଜକୁମାର ମଧ୍ୟ ମାଶିଆ ମୁଖରୁ ପ୍ରଶଂସା ଶୁଣି ଖୁବ୍ ଆନନ୍ଦିତ ହେଉଥିଲେ । ପେଟ୍ରୋଭିଚ୍‌ମାନେ ବି ରାଜକୁମାରଙ୍କ ବହୁତ ପ୍ରଶଂସା କରୁଥିଲେ ଏବଂ ଆତିଥେୟତା ପାଇଁ କୃତଜ୍ଞତା ଜଣାଉଥିଲେ ।

ରାତ୍ରି ଭୋଜନଟି ଖୁବ୍ ଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା । ତା'ପର ଦିନ ସେମାନେ ପରସ୍ପରର ଆନ୍ତରିକ ବନ୍ଧୁତା କାମନା କରି ପରସ୍ପରଠାରୁ ବିଦାୟ ନେଲେ ।

# ଚତୁର୍ଦ୍ଦଶ ଅଧ୍ୟାୟ

ମାଶିଆ କିରିଲୋଭିନା ତା କୋଠରିର ଝରକା ନିକଟରେ ବସିଥିଲା । ନିଜର ଗୋଲାପୀ ସ୍ୱପ୍ନରେ ସେ ବିଭୋର ହୋଇ ଉଠିଥିଲାବେଳେ ହଠାତ୍ ଗୋଟିଏ ହାତ ଖୋଲା ଝରକା ଦେଇ ଭିତରକୁ ପ୍ରବେଶ କଲା ଓ ଝରକାର ଫ୍ରେମ୍ ଉପରେ ଚିଠିଟିଏ ରଖିଦେଲା । ମାଶିଆ ତାର ଭାବନା ଜଗତରୁ ଫେରିବା ପୂର୍ବରୁ ସେ ଅଦୃଶ୍ୟ ହୋଇଗଲା । ଠିକ୍ ସେହି ସମୟରେ ଜଣେ ପରିଚାରକ ତା' କୋଠରି ଭିତରକୁ ପ୍ରବେଶକଲା । ଭୃତ୍ୟଠାରୁ ବାପା ତାକୁ ଡାକୁଥିବା ଶୁଣି ସେ ଥରଥର ହାତରେ ଚିଠିଟିକୁ ରୁମାଲ ଭିତରେ ଲୁଚାଇଦେଲା ଏବଂ ସଙ୍ଗେ ସଙ୍ଗେ ବାପାଙ୍କ ନିକଟକୁ ଚାଲିଗଲା ।

କିରିଲା ପେଟ୍ରୋଭିଚ ଏକୁଟିଆ ନ ଥିଲେ, ଭେରେସ୍କି ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ମାଶିଆ ଉପସ୍ଥିତ ହେବା ମାତ୍ରକେ ତାକୁ ପ୍ରେମାଲିଙ୍ଗନ କଲା ଭଳି ଖୁବ୍ ଖୁସିହୋଇ ଭେରେସ୍କି ନୀରବରେ ମୁଣ୍ଡ ତଳକୁ କରି ଠିଆ ହେଲେ । ଝିଅକୁ ଦେଖି କିରିଲା ଆନନ୍ଦରେ କହିଲେ—"ଏଠାକୁ ଆସ । ତୋ ପାଇଁ ଗୋଟିଏ ସୁସମ୍ବାଦ ଅଛି । ଭେରେସ୍କି ତୋତେ ବିବାହ କରିବାକୁ

ରହୁଁଛନ୍ତି ।"

ହଠାତ୍ ମୁଣ୍ଡରେ ବଜ୍ରପାତ ହେଲାପରି ମାରିଆ ଅତି ଦୁଃଖରେ ତା' ମୁହଁକୁ ଦୁଇ ହାତରେ ଘୋଡ଼େଇଦେଲା । ସେ ନିର୍ବାକ୍ ନିସ୍ପନ୍ଦ । ରାଜକୁମାର ଆଗ୍ରହ ଆତିଶଯ୍ୟରେ ଅତ୍ୟନ୍ତ ଆନ୍ତରିକତାର ସହିତ ତା' ହାତ ଦୁଇଟି ଧରିନେଇ କହିଲେ, "ତୁମେ ସମ୍ମତି ଦେଲେ ମୁଁ ଖୁସି ହେବି ।" ମାତ୍ର ମାରିଆ କିଛି କହିଲା ନାହିଁ ।

ଏହା ଦେଖି କିରିଲା କହିଲେ—"ଏ ବିଷୟରେ ଝିଅମାନେ ବଡ଼ ଲଜ୍ଜାଶୀଳା । ସେମାନେ ମତାମତ ଦେଇପାରନ୍ତି ନାହିଁ । ସେ ନିଶ୍ଚୟ ରାଜି ହେବ ।"

ମାରିଆ ନିର୍ବୋଧ ଭାବରେ ଠିଆହୋଇଥିଲା । ରାଜକୁମାର ତା' ହାତରେ ଚୁମ୍ବନ ଦେଲେ । ବାଧା ମାନୁ ନ ଥିବା ମନ ତା'ର ଅସ୍ଥିର ହୋଇଉଠିଲା । ଆଖିରୁ ଲୁହ ବୋହିପଡ଼ିଲା । କିରିଲା କହିଉଠିଲେ— ଝିଅମାନେ ବାହାଘର ସ୍ଥିର ହେବା ଶୁଣିଲେ ସାଧାରଣତଃ ଏପରି କାନ୍ଦିଥାନ୍ତି । ସେଥିରେ ଚିନ୍ତା କରିବାର କିଛି ନାହିଁ । ଆମେ ଏବେ ଯୌତୁକ ବିଷୟରେ କଥାବାର୍ତ୍ତା ହେବା ।"

ମାରିଆ ଏହି ସୁଯୋଗର ଅପେକ୍ଷାରେ ଥିଲା । ସେ ଅସହାୟ ଭାବେ ଦ୍ରୁତପଦରେ ସେଠାରୁ ଚାଲିଯାଇ ନିଜର ବେଡ୍‌ରୁମ୍‌ରେ ପଶି କବାଟ ବନ୍ଦ କରି ବିକଳ ହୋଇ କାନ୍ଦିଉଠିଲା । ତା ମନ ଭିତରେ କିଏ ଯେପରି କହୁଥିଲା—'ସମ୍ପତ୍ତିବାନ୍ ପଚାଶ ବର୍ଷ ବୟସ୍କ ଏ ରାଜକୁମାରଙ୍କୁ ବାହାହେବା ଅପେକ୍ଷା ଆତ୍ମହତ୍ୟା କରିବା ବରଂ ଭଲ । ତା'ର ଡୁବ୍ରୋଭସ୍କି କଥା ମନେପଡ଼ିଲା । ତା' ସହିତ ତା'ର ଚିଠିଟି କଥା ମନେପଡ଼ିବା ମାତ୍ରେ ସେ ଆଗ୍ରହରେ ଚିଠିଟି ଖୋଲିଲା । ତାହା ଯେ ଡୁବ୍ରୋଭସ୍କିର ଚିଠି ଏହା ସେ ଜାଣିଥିଲା । ସେ ଚିଠିରେ କେବଳ କେତୋଟି ଶବ୍ଦ ଲେଖାଥିଲା— ନିର୍ଦ୍ଦିଷ୍ଟ ସ୍ଥାନରେ ରାତି ଦଶଟାରେ ଦେଖାହେବ ।

# ପଞ୍ଚଦଶ ଅଧ୍ୟାୟ

ଆକାଶରେ ଚନ୍ଦ୍ର ନାହିଁ । ଜୁଲାଇ ମାସର ମେଘ ଅନ୍ଧାର ରାତ୍ରି । ଆକାଶରେ ମେଘର ଘନଘଟା । ବିଦ୍ୟୁତ୍ ସ୍ଫୁରଣରେ ପୃଥିବୀ ଚମକୁଛି । ପବନର ମର୍ମର ଧ୍ୱନିରେ ଉଦ୍ୟାନ ମୁଖରିତ । ରାତ୍ରିର ଅନ୍ଧକାରରେ ସବୁ ଅସ୍ପଷ୍ଟ । ମାରିଆ ତା'ର ଲକ୍ଷ୍ୟସ୍ଥଳ ଅଭିମୁଖେ ଆଗେଇଚାଲିଲା, ମାତ୍ର ଲକ୍ଷ୍ୟସ୍ଥାନରେ କାହାରିକୁ ଦେଖିବାକୁ ପାଇଲା ନାହିଁ । ହଠାତ୍ ଡୁବ୍ରୋଭସ୍କି ତା' ପଛରୁ ଆସି ସମ୍ମୁଖରେ ଠିଆ ହୋଇଗଲା । ଅତି ବେଦନାସିକ୍ତ ସ୍ୱରରେ ସେ କହିଲା, "ମୁଁ ସବୁକଥା ଜାଣେ । ତୁମେ ତୁମର ଶପଥ ମନେରଖିବ ।"

ମାରିଆ ଦୁଃଖରେ କହିଲା—"ତୁମେ ମୋତେ ସବୁପ୍ରକାର ସାହାଯ୍ୟ କରିବ ବୋଲି କହିଥିଲ । ମୋତେ ଡରମାଡ଼ୁଛି । ମୋ ଉପରେ ଗତି ନାହିଁ । ତୁମେ ମୋତେ କେମିତି ସାହାଯ୍ୟ କରିପାରିବ କୁହ ?"

ଡୁବ୍ରୋଭସ୍କି କହିଲା—"ମୋତେ ଯଦି ତୁମେ ଭଲପାଅ, ତେବେ ଭେରେସ୍କିକୁ ଛୁଇଁବ ନାହିଁ । ମୁଁ ଚାହେଁନାହିଁ ତୁମେ କୌଣସି ଭୟାବହ କାର୍ଯ୍ୟର କାରଣ ହୁଅ ।"

ମାରିଆ କହିଲା—"ମୁଁ ତାକୁ ଛୁଇଁବ ନାହିଁ । ତୁମର ପବିତ୍ର ପ୍ରେମ ହିଁ ମୋତେ ପବିତ୍ର କରିରଖିବ । ଜୀବନ କ'ଣ, ସେ କଥା ମୁଁ ତୁମଠାରୁ ବୁଝିଛି । ତୁମ ନାମରେ କୌଣସି ମିଥ୍ୟାଗୁଜବ ମୋତେ ପରିବର୍ତ୍ତିନ କରିପାରିବ ନାହିଁ । ମୋର ସମସ୍ତ ଦୋଷ ସତ୍ତ୍ୱେ ତୁମେ ମୋ ନିକଟରେ ସେହିପରି ପବିତ୍ର ହୋଇ ରହିବ ।"

ଡୁବ୍ରୋଭସ୍କି—"କିନ୍ତୁ ବର୍ତ୍ତମାନ ଚନ୍ଦ୍ରାର ବିଷୟ—ତୁମର ସେ ନିର୍ଦ୍ଦୟ ବାପାଙ୍କ ନିକଟରୁ ତୁମକୁ କିପରି ରକ୍ଷା କରିବାକୁ ହେବ ?"

ମାରିଆ—"ମୋ ବାପା ଜଣେ ଦୃଢ଼ମନା ବ୍ୟକ୍ତି ସତ—ତଥାପି ସେ ମୋତେ ବହୁତ ଶ୍ରଦ୍ଧା କରନ୍ତି । ମୁଁ ତାଙ୍କ ନିକଟରେ ଦୁଃଖରେ କାନ୍ଦିଲେ ସେ ମନ ପରିବର୍ତ୍ତିନ କରିବେ ବୋଲି ଆଶା କରୁଛି ।"

ଡୁବ୍ରୋଭସ୍କି—"ତାହା ବୃଥା ଆଶା । ସେ କିଛି ବୁଝିବେ ନାହିଁ । ସ୍ତ୍ରିଅମାନେ ବିବାହ ପୂର୍ବରୁ ଏପରି କାନ୍ଦନ୍ତି ବୋଲି ସେ ଧରିନେବେ । ତୁମର ଅନିଚ୍ଛାସତ୍ତ୍ୱେ ସେ ଯଦି ବିବାହ ସ୍ଥିର କରିଦିଅନ୍ତି, ତେବେ କ'ଣ ହେବ ? ସେ ବୁଢ଼ା ହାତରେ ତୁମକୁ ସମର୍ପଣ କରିବାକୁ ଯଦି ଜୋର୍ କରି ଚର୍ଚ୍ଚକୁ ନେଇଯାନ୍ତି ତେବେ ?"

ମାରିଆ—"ତା'ପରେ···ଓଃ, ମୁଁ ତ କିଛି କରିପାରିବିନାହିଁ । ତୁମେ ଆସି ମୋତେ ନେଇଯିବ ।"

ଡୁବ୍ରୋଭସ୍କିର ମୁହଁ ଶୁଖିଗଲା । ମୁଣ୍ଡ ତଳକୁ କରି ଠିଆହୋଇ ଅନେକ ସମୟ ପର୍ଯ୍ୟନ୍ତ କିଛି କହିପାରିଲା ନାହିଁ । ତାପରେ କହିଲା—"ତୁମର ସମସ୍ତ ବିଦ୍ୟାବୁଦ୍ଧି ପ୍ରୟୋଗ କରି, ତୁମ ବାପାଙ୍କ ପାଦତଳେ ପଡ଼ି ତାଙ୍କୁ ବୁଝାଅ । ଜଣେ ବୁଢ଼ାକୁ ବିଭା ହେବା ଫଳରେ ତୁମ ଭବିଷ୍ୟତର ଭୟାବହତା ବିଷୟରେ ତାଙ୍କୁ କୁହ । କୁହ ଯେ ଧନ ତୁମକୁ କେବେ ସୁଖୀ କରିପାରିବନାହିଁ । ଜଣେ ଦରିଦ୍ର ଯୁବକକୁ ବିଭାହେବାରେ ଯେଉଁ ଆନନ୍ଦ, ଜଣେ ବିତ୍ତଶାଳୀ ବୃଦ୍ଧକୁ ବିଭାହେବାରେ ସେ ଆନନ୍ଦ ନାହିଁ । ତାଙ୍କ କ୍ରୋଧକୁ ଭୟ କରନାହିଁ । ହୃଦୟର ନିଭୃତ କୋଣରେ ଟିକେ ମାତ୍ର ଆଶା ଥିବା ପର୍ଯ୍ୟନ୍ତ କର୍ତ୍ତବ୍ୟରୁ ଓହରିଯାଅନାହିଁ । ମୁଁ ତୁମକୁ ଅନୁନୟ କରି କହୁଛି । ଆମର ଆଉ କୌଣସି ବାଟ ନାହିଁ ।" ଏହାକହି ମୁହଁରେ ହାତ ଦେଇ ଡୁବ୍ରୋଭସ୍କି ଦୀର୍ଘଶ୍ୱାସ ଛାଡ଼ିଲା ଓ ମାଶା କାନ୍ଦିଉଠିଲା ।

ଡୁବ୍ରୋଭସ୍କି—ଓଃ କି ଦୁଃଖ ! ମୋ ପାଇଁ ଏହା ପ୍ରବଳ ଦୁଃଖର କଥା । ତୁମପାଇଁ ମୁଁ ଜୀବନ ଦେଇପାରିବି । ମୋ ଛାତିରେ ହାତଦେଇ ଦେଖ-ମୁଁ କି ଯନ୍ତ୍ରଣାରେ ଛଟପଟ ହେଉଛି । ତୁମେ ତ ମୋ ପାଇଁ ଦେଖ । ଆମେ ଆମର ଅମର ପ୍ରେମପାଇଁ ଆତ୍ମୋତ୍ସର୍ଗ କରିବା । ମୁଁ ଶପଥ, ଅସହାୟ ହେଲେ ମଧ୍ୟ ତୁମକୁ ପାଇବାପାଇଁ ମୋର ସମସ୍ତ ଶକ୍ତି ଓ ସାମର୍ଥ୍ୟ ପ୍ରୟୋଗ କରିବାକୁ କେବେ ବି କୁଣ୍ଠାବୋଧ କରିବି ନାହିଁ । ସେଇ ଘୃଣିତ ଜୀବକୁ ଘୃଣାକରିବାକୁ ମୁଁ ବାଧ୍ୟ ହେଉଛି । ତା'ପାଇଁ ମୋ ଅନ୍ତରରେ ଆଉ ଟିକେ ହେଲେ ଦୟା ନାହିଁ ।"

ଏହା କହିସାରି ଡୁବ୍ରୋଭସ୍କି ମାରିଆକୁ ଖୁବ୍ ଆଦର ଓ ଦୁଃଖରେ ତାର ବୁକୁ ଉପରକୁ ଧୀରେ ଧୀରେ ଟାଣିଆଣିଲା । ମାଶା ଡୁବ୍ରୋଭସ୍କିର ବୁକୁ ଉପରେ ଧୀରେ ଢଳି ପଡ଼ିଲା । କିଛି ସମୟ ପାଇଁ ଉଭୟେ ନୀରବ ରହିଲେ ।

ସମୟ ଆଗେଇ ଚାଲିଲା । ଶେଷରେ ମାଶା କହିଲା, 'ମୁଁ ଏବେ ଯିବି ।'

ଡୁବ୍ରୋଭସ୍କି ମାରିଆର ହାତଟିକୁ ଧୀରେ ତୋଳିଧରି ମୁଦିଟିଏ ପିନ୍ଧାଇ ଦେଲା । କହିଲା—"ଯଦି ତୁମେ କୌଣସି ଅସୁବିଧାରେ ପଡ଼ି ମୋର ସାହାଯ୍ୟ ଚାହଁ, ତେବେ ଏ ମୁଦିଟିକୁ ଏହି ଓକ୍ ଗଛର କୋରଡ଼ରେ ରଖିଦେଲେ କ'ଣ କରିବାକୁ ହେବ ମୁଁ ତା'ର ବ୍ୟବସ୍ଥା କରିବି ।"

ତାପରେ ଡୁବ୍ରୋଭସ୍କି ମାରିଆ ହାତରେ ଚୁମ୍ବନଟିଏ ଆଙ୍କିଦେଇ ବୃକ୍ଷ ଗହଳରେ ଅଦୃଶ୍ୟ ହୋଇଗଲା ।

## ଷୋଡ଼ଶ ଅଧ୍ୟାୟ

ମାରିଆ ସହିତ ରାଜକୁମାର ଭେରେସ୍କିଙ୍କର ବିବାହ ଖବର କ୍ରମେ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଗଲା । ଏ ସମ୍ବାଦରେ କିରିଲା ପେତ୍ରୋଭିଚ୍ ସବୁଆଡ଼ୁ ଅଭିନନ୍ଦନପତ୍ର ପାଇଲେ । ବିବାହ ଉତ୍ସବର ଦିନ ନିକଟ ହୋଇଆସିଲା । ମାତ୍ର ମାରିଆ ଦିନକୁ ଦିନ ଗମ୍ଭୀର ହୋଇଉଠି ସମସ୍ତଙ୍କ ସହିତ କଥାବାର୍ତ୍ତା କରିବା ବନ୍ଦକରି ନୀରବ ରହିଲା । ଭେରେସ୍କିଙ୍କ ତରଫରୁ ତାକୁ ଅବରୁଦ୍ଧ କରି ରଖିବାକୁ ତାଙ୍କ ଲୋକମାନଙ୍କ ଉପରେ ଚାପ ପ୍ରୟୋଗ କରାଗଲା । ତାଙ୍କ ପ୍ରତି ଯେ ମାରିଆର ଶ୍ରଦ୍ଧା ନାହିଁ, ଏ କଥା ଭେରେସ୍କି ଉତ୍ତମରୂପେ ଜାଣିଥିଲେ ।

ସମୟ ଆଗେଇଚାଲିଲା । ସମସ୍ତ ଘଟଣା ବର୍ଣ୍ଣନା କରି ମାରିଆ ଭେରେସ୍କିଙ୍କ ନିକଟକୁ ଚିଠି ଦେବାକୁ ସ୍ଥିରକଲା—ସେ ତାଙ୍କୁ ସମସ୍ତ କଥା ଖୋଲିଖୋଲି ଭାବେ ଲେଖିଦେବ ଏବଂ ତାହାର ଯେ ତାଙ୍କ ପ୍ରତି

ଟିକଏ ବି ଶୁଣିବା ନାହିଁ ସେ କଥା ବି ଜଣାଇଦେବ । ତା' ସହିତ ଭେରେଷ୍ଟିଙ୍କ ସଙ୍ଗେ ତାର ବିଭାଘର ନ ହେଉ ସେ କଥା ସେ ତା' ବାପାଙ୍କୁ ଉତ୍ତମରୂପେ ବୁଝାଇଦେବ । ମାରିଆ ତା'ର ପରିକଳ୍ପନା ଅନୁସାରେ ଭେରେଷ୍ଟିଙ୍କୁ ଚିଠିଟା ଲେଖିଲା । ଭେରେଷ୍ଟି ନିରୋଳା କୋଠରିରେ ବସି ଚିଠିଟି ପଢ଼ିଲେ ଓ ପଢ଼ିବା ସଙ୍ଗେ ସଙ୍ଗେ କିଛି ସମୟ ସ୍ଥାଣୁ ପରି ବସିରହିଲେ । ତଥାପି ଚିଠି ଦ୍ୱାରା ପ୍ରଭାବିତ ନହୋଇ ବିଭାଘର ଶୀଘ୍ର କରାଇବା ପାଇଁ ଉଦ୍ୟମ କଲେ ଏବଂ ସେଇ ଚିଠିଟି ତାଙ୍କ ଭାବୀ ଶ୍ୱଶୁରଙ୍କୁ ଦେଖାଇଲେ ।

ଝିଅର ଚିଠି ପାଠକରି କାଉଣ୍ଟ ପେଟ୍ରୋଭିଚ୍ ରାଗରେ ଥରିବାକୁ ଲାଗିଲେ । ଭେରେଷ୍ଟି ତାଙ୍କୁ ବୁଝାଇଦେଇ କହୁଥିଲେ ଯେ ସେ ମାରିଆକୁ ଏ ବିଷୟରେ କିଛି କହିଲେ ଫଳ କିଛି ଭଲ ହେବନାହିଁ । ସେ କଥା ମାନି କାଉଣ୍ଟ ପେଟ୍ରୋଭିଚ୍ ମାଶାକୁ ଏ ବିଷୟରେ କିଛି କହିଲେ ନାହିଁ— କିନ୍ତୁ ବିଭାଘର ଆୟୋଜନରେ ଅଧିକ ତତ୍ପର ହୋଇଉଠିଲେ ।

ଭେରେଷ୍ଟି ମାରିଆ ନିକଟକୁ ଗଲେ । ଯାଇ ତାକୁ ବୁଝାଇ କହୁଥିଲେ ଯେ ସମୟକ୍ରମେ ସବୁ ଠିକ୍ ହୋଇଯିବ । କାରଣ ମାଶାକୁ ହରାଇବାର ବିଷୟ ସେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରିପାରୁନଥିଲେ । ସେ ସମ୍ମାନର ସହିତ ମାରିଆର ହାତକୁ ଚୁମ୍ବନ କରିଥିଲେ ଓ ତା ବାପାଙ୍କ ନିଷ୍ପତ୍ତି ବିଷୟରେ କିଛି ନକହି ସେଠାରୁ ଚାଲିଆସିଥିଲେ ।

ବାପା କାଉଣ୍ଟ ମାରିଆର କୋଠରୀ ଭିତରକୁ ପ୍ରବେଶ କରିବା ମାତ୍ରକେ ଭେରେଷ୍ଟି ବଗିଚାକୁ ଚାଲିଗଲେ ଏବଂ ଆଗାମୀ ଦିନଟି ପାଇଁ ପ୍ରସ୍ତୁତ ହେବାକୁ ତାକୁ କହିଗଲେ । ରାଜକୁମାର ଭେରେଷ୍ଟିଙ୍କର ସେହି କଥା ମାରିଆ କର୍ଲେଭିନାକୁ ଅସ୍ଥିର କରିପକାଇଲା । ସେ କୋହ ସମ୍ବରଣ କରିନପାରି ନିତାନ୍ତ ଅସହାୟ ଭାବେ ପିଲାଙ୍କ ପରି କାନ୍ଦିଉଠିଲା ଏବଂ ତା' ବାପାଙ୍କ ଗୋଡ଼ତଳେ ପଡ଼ିଗଲା । ସେ ବିକଳ ହୋଇ କାନ୍ଦି କାନ୍ଦି କହିଲା, ''ପାପା, ମୋତେ ରକ୍ଷାକର, ମୁଁ ତାକୁ ଭଲପାଏ ନାହିଁ କି ତା' ସ୍ତ୍ରୀ ହେବାକୁ ଚାହେଁନାହିଁ ।''

ଏହା ଶୁଣି କରଲ ପେଟ୍ରୋଭିଚ୍ କ୍ରୋଧରେ ଗର୍ଜନ କରି କହିଲେ, "ତୁ ଏବେ ଏ କ'ଣ କହୁଛୁ ? ଆଜି ପର୍ଯ୍ୟନ୍ତ ତୁ ନୀରବ ରହିଲୁ, ଆଉ ଆଜି ଯେତେବେଳେ ସବୁ କଥା ସ୍ଥିର କରିସାରିଲିଣି ଏ କି କଥା କହୁଚୁ ? ତୁ ତୋର ନିଷ୍ପତ୍ତିର ପରିବର୍ତ୍ତନ କରେ । ଏ ବିଷୟରେ ତୁ ମୋ'ଠାରୁ କିଛି ସହାନୁଭୂତିର ଆଶା ରଖନାହିଁ ।'

କାନ୍ଦି କାନ୍ଦି ହତାଶାରେ ଭାଙ୍ଗିପଡ଼ୁଥିବା ମାଶା କହିଲା, 'ବାପା, ମୋ ପ୍ରତି ନିର୍ଦ୍ଦୟ ହୁଅନାହିଁ । ମୁଁ ତୁମର କି ଅପରାଧ କରିଛି ଯେ ମୋତେ ଏମିତି ସ୍ୱାନବାବେ ତଡ଼ିଦେବାକୁ ବସିଛ ? ତୁମେ ମୋ ପାଇଁ କାହିଁକି ବ୍ୟସ୍ତ ହେଉଛ ? ମୁଁ କେବଳ ତୁମ ପାଖରେ ରହିବାକୁ ଚାହେଁ । ମୁଁ ଦୁଃଖରେ ରହୁଛି ଶୁଣିଲେ ତୁମେ କ'ଣ ଦୁଃଖ ପାଇବ ନାହିଁ ? ତୁମେ ଥୟ ହୋଇ ରହିପାରିବ ତ ପାପା ? ମୁଁ ତୁମ ପାଖେ ରହିବ । ମୋର ବିଭାହେବା ଦରକାର ନାହିଁ ।"

କିରଲ ପେଟ୍ରୋଭିଚ୍ ଝିଅର ଏ ହୃଦୟସ୍ପର୍ଶୀ କଥାରେ ପ୍ରଥମେ ବ୍ୟସ୍ତ ହୋଇପଡ଼ିଲେ, କିନ୍ତୁ ପରମୁହୂର୍ତ୍ତରେ ବିରକ୍ତ ହୋଇ କହିଲେ—"ଏ ବାଜେ କଥା ଛାଡ଼ । କ'ଣ କଲେ ତୁ ସୁଖୀ ହେବୁ ସେ କଥା ମୁଁ ତୋ ଅପେକ୍ଷା ବେଶୀ ଭଲ ଜାଣେ । ଜାଣିରଖ, ଆଉ ଦୁଇଦିନ ପରେ ତୋର ବିଭାଘର ହେବ ।"

ମାଶା ଦୁଃଖରେ ଚିତ୍କାର କରିଉଠିଲା—"ଦୁଇଦିନ ପରେ ? ହେ ପ୍ରଭୁ···ନାଁ, ନାଁ, ତାହା କଦାପି ହୋଇ ପାରିବନାହିଁ । ଏହା ଅସମ୍ଭବ ! ପାପା, ମୋ'ଠାରୁ ଶୁଣ, ଯଦି ମୋତେ ଜୋର୍‌କରି ବିଭାକରାଯାଏ, ତେବେ ଶେଷରେ ମୁଁ ମୋ ରକ୍ଷକର ଆଶ୍ରୟ ନେବି । ତେଣିକି ଯାହା ଘଟିବ ତୁମେ ତାହା କଳ୍ପନା କରିନଥିବ ।"

କିର୍ଲା ପେଟ୍ରୋଭିଚ୍ ଧମକାଇ କହିଲେ—କ'ଣ ମୋତେ ଧମକ ଦେଉଛୁ ? ତୁ ମୋତେ ଧମକ ଦେବାକୁ ସାହସ କରିପାରିଲୁ ? ମେଞ୍ଚିଆ ଛୁଆ ବିକଟେ—ମୁଁ ତୋର କ'ଣ କରିପାରେ ଦେଖିବୁ ? ରକ୍ଷକର ଦୁହାଇ ଦେଇ ମୋତେ ଡରାଉଛୁ ? ସେ କିଏ ମୁଁ ଜାଣିବାକୁ ଚାହେଁ ।

ମାଣିଆ ଜୋର୍‌ଦେଇ କହିଲା—"ଭ୍ଲାଦିମିର ଡୁବ୍ରୋଭସ୍କି..."

ମୁହୂର୍ତ୍ତିକ ପାଇଁ କିରିଲା ପେଟ୍ରୋଭିଚ୍ ଭାବିଲେ ଯେ ଝିଅ ତାଙ୍କର ବୋଧେ ପାଗଳ ହୋଇଗଲା । ତାପରେ କହିଲେ—"ଭଲକଥା, ସେ ଯେ କେହି ହେଉ ନା କାହିଁକି ତୋର ବିଭାଘର ପର୍ଯ୍ୟନ୍ତ ତୁ ଏ ଘରେ ବନ୍ଦୀ ହୋଇ ରହିବୁ ।" ଏହା କହି ସେ ବାହାରପଟୁ ଘରେ ତାଲା ପକାଇ ଚାଲିଗଲେ ।

ତାର ଏ ଦୁରବସ୍ଥା କଥା ଭାବି ମାଶିଆ ଦୀର୍ଘ ସମୟ ଧରି କାନ୍ଦିଲା । ଶେଷରେ ସେ କାନ୍ଦ ବନ୍ଦକରି ନିଜର ଅନ୍ଧକାରଚ୍ଛନ୍ନ ଭବିଷ୍ୟତ ଓ ବର୍ତ୍ତମାନର ବିପଦ ବିଷୟରେ ଚିନ୍ତା କଲା । ତା'ର ପ୍ରଥମ ଚିନ୍ତା ଥିଲା ସେ କିପରି ନିଜକୁ ରକ୍ଷାକରିପାରିବ । ଡୁବ୍ରୋଭସ୍କି ତାକୁ ଦେଇଥିବା ମୁଦିକୁ ସେ ଚାହିଁଲା । ସେ ମନକୁ ଦୃଢ଼ କରି ସ୍ଥିର କଲା, ସନ୍ଧ୍ୟା ହେବା ମାତ୍ରକେ ସେ ଆଜି ସେଠାକୁ ଯିବ ଓ ଅପେକ୍ଷା କରିବ ।

ଦିନ ଶେଷହେଲା । ମାଶିଆ ନିଜକୁ ପ୍ରସ୍ତୁତ କରିନେଲା ବାହାରକୁ ଯିବାପାଇଁ । ସେତେବେଳେ ସେ ଜାଣିଲା ଯେ ତା' ବାପା ତା'ରୁମ୍‌ର ଦ୍ୱାର ନ ଖୋଲିବା ପାଇଁ କଡ଼ା ଆଦେଶ ଜାରିକରି ଘରେ ତାଲା ପକାଇ ଯାଇଥିଲେ । ସେ ମେଘମୁକ୍ତ ଆକାଶକୁ ଚାହିଁ ଝରକା ପାଖେ ବସିରହିଲା । ସେହି ଭାବରେ ତା' ଆଖିକୁ କେତେବେଳେ ଯେ ନିଦ ଆସିଯାଇଥିଲା, ସେ ତାହା ଜାଣିପାରିଲାନାହିଁ । ନିଦ ଭାଙ୍ଗିଲା ପରେ ଦେଖିଲା ସକାଳ ହୋଇଯାଇଛି—ସୂର୍ଯ୍ୟ ଆକାଶକୁ ଉଠିଗଲେଣି ।

## ସପ୍ତଦଶ ଅଧ୍ୟାୟ

ନିଦ ଭାଙ୍ଗିବା ମାତ୍ରକେ ମାରିଆର ତା' ବିପନ୍ନ ଅବସ୍ଥା କଥା ମନେ-ପଡ଼ିଲା । ସେ ଘଣ୍ଟା ବଜାଇଲା । ଦୈନିକ ପରିଷ୍କାରିକା ଘଣ୍ଟା ଶବ୍ଦ ଶୁଣି ସେଠାରେ ଉପସ୍ଥିତ ହେଲା । ମାରିଆ ତା'ଠାରୁ ଜାଣିଲା ଯେ କିରିଲା

ପେଟ୍ରୋଭିଚ, ଭେରେସ୍କି ଙ୍କ ନିକଟକୁ କାଲି ସନ୍ଧ୍ୟାରୁ ଯାଇଥିଲେ । ତା’ ପ୍ରତି ସତର୍କ ଦୃଷ୍ଟି ଦେବାପାଇଁ ସମସ୍ତଙ୍କୁ ଆଦେଶ ଦିଆଯାଇଛି । ବକ୍ସଘର ପାଇଁ ଯେପରି କିଛି ଉଲ୍ଲେଖମାସ୍ତ ସାଜସଜ୍ଜା ହୋଇନାହିଁ । ଘଟଣାଗୁଡ଼ିକ ଚୁମ୍ବକରେ କହିସାରିବା ପରେ ପରିସ୍ଥିରିକା ପୁନର୍ବାର ଘରେ ତାଲି ପକାଇ ଚାଲିଗଲି ।

ପରିସ୍ଥିରିକାଠାରୁ ଶୁଣିଥିବା ଖବର ମାରିଆର ମନରେ ବଡ଼ ଆଘାତ ଦେଲା । ତା’ର ଅଶାନ୍ତ ମନ ବିଦ୍ରୋହି କରିଉଠିଲା । ତା ରକ୍ତ ତାତିଗଲା । ସେ ଡୁବ୍ରୋଭସ୍କିଙ୍କୁ ତା’ର ବିପଦ ଜଣାଇବା ପାଇଁ ଉଦ୍‌ଗ୍ରୀବ ହେଲା ଓ ସେଥିପାଇଁ ଉପାୟ ଚିନ୍ତାକଲା । ଡୁବ୍ରୋଭସ୍କି ଦେଇଥିବା ମୁଦିଟି ଓକ୍ ଗଛର କୋରଡ଼ରେ କୌଣସି ଉପାୟରେ ପକାଇଦେଇପାରିଲେ ସେ ମୁକ୍ତି ପାଇପିବ । ଏହି ସମୟରେ ତା’ କୋଠରିର ଝରକାରେ ଏକ ଢେଲା ଆସି ବାଜିବାରୁ ତା’ର ଚିନ୍ତାର ଅଡ଼ୁଆ ସୂତାଖିଅ ଛିଣ୍ଡିଗଲା । ମାରିଆ ବାହାରକୁ ଚାହିଁ ଖୁବ୍ ସନ୍ତର୍ପଣରେ ସେ ଆଡ଼କୁ ଆସୁଥିବା ଏକ ଗ୍ରେଟ ପିଲାକୁ ଦେଖିଲା । ମାରିଆ ତାକୁ ଦେଖି ଭାରି ଖୁସି ହୋଇ ସଙ୍ଗେ ସଙ୍ଗେ ଝରକା ଖୋଲିଦେଲା ।

ପିଲାଟି ଝରକା ପାଖକୁ ଆସି କହିଲା—ଅପା, ତୁମେ କ’ଣ କହିବାକୁ ଚାହୁଁଚ ? ମୁଁ ତୁମକୁ ଦେଖିବାକୁ ଆସିଲି, ଅପା । ତୁମ କଥା ନ ଶୁଣିବା ପାଇଁ ପାପା ସମସ୍ତଙ୍କୁ କହିଛନ୍ତି, କିନ୍ତୁ ତୁମେ ଯାହା କହିବ ମୁଁ ନିଶ୍ଚୟ କରିବ ।

—“ତୁ ନଦୀ କୂଳରେ ଥିବା ଓକ୍ ଗଛଟା ଦେଖିଛୁ ? ତା’ ଭିତରେ ଏକ କୋରଡ଼ ଅଛି ଦେଖିଛୁ ?”

—“ହଁ, ଅପା ।”

—“ଯଦି ତୁ ମୋତେ ପ୍ରକୃତରେ ଭଲପାଉଥାଉ, ତେବେ କାହାରିକୁ ନଦେଖାଇ କୋରଡ଼ରେ ଏ ମୁଦିଟି ରଖିଦେବୁ । ସାବଧାନ, କେହି ଯେପରି ନ ଦେଖନ୍ତି ।” ଏହା କହିସାରି ସେ ମୁଦିଟିକୁ ପିଲାଟି ଉପରକୁ ପକାଇଦେଇ ଝରକା ବନ୍ଦ କରିଦେଲା । ମୁହୂର୍ତ୍ତିକ ମଧ୍ୟରେ ପିଲାଟି

ମୁଢଟି ତଳୁ ଉଠାଇନେଇ ଓ ଦ୍ରୁତଗତିରେ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଗଲା । ଅଣନିଃଶ୍ୱାସୀ ହୋଇ ଦୌଡ଼ିଯାଉଥିବା ହେତୁ ସେ ଟିକେ ଠିଆହୋଇଗଲା ଏବଂ ମୁଢଟି କୋରଡ଼ରେ ପକାଇବା ପୂର୍ବରୁ ସ୍ୱର-ଆଡ଼କୁ ଚାହିଁଲା । ସେ ମୁଢଟି ରଖିଦେଇ ତା' ଅପାକୁ କହିବା ପାଇଁ ଧାଇଁଆସୁଥିବା ବେଳେ ଛିଣ୍ଡା ଲେଙ୍ଗେଡ଼ା ପୋଷାକ ପିନ୍ଧିଥିବା ଏକ ଦରିଦ୍ର ବାଳକ ଏଣେ ତେଣେ ଚାହିଁ ଚାହିଁ ଆସି ସେଠାରେ ଉପସ୍ଥିତ ହେଲା । ସେ ଓକ୍ ଗଛ ପାଖକୁ ଯାଇ ତା'ର କୋରଡ଼ ଭିତରେ ହାତ ଭର୍ତ୍ତିକରିଦେଲା । ଏହା ଦେଖି ଶାସା ତା' ନିକଟକୁ ଝପଟିଗଲା । ଧମକାଇ କହିଲା—'ଏ ଭିକାରୀ ଟୋକା ! ସେଠି କ'ଣ କରୁଚୁ ?'

—"ତୋର ସେଥିରେ କ'ଣ ଅଛି ? ମୁଁ ମୋର ଯାହା ମନ କଲି ।"

—"ବଦ୍‌ମାସ୍, ପାଜି, ମୁଢ ଦେ କହୁଛି । ନ ହେଲେ ତୋତେ ଠିକ୍ ଶିକ୍ଷା ଦେବି ।"

ସେ ପିଲାଟି ଏ କଥାରେ ରାଗି ଶାସା ଗାଲରେ ଜୋର୍‌ରେ ଏକ ଚଟ୍‌କଣା ମାରିଲା, କିନ୍ତୁ ଶାସା ତାକୁ ନ ଛାଡ଼େ । ସେ ତା' ହାତକୁ ଜାବୁଡ଼ି ଧରି ଖୁବ୍ ବଡ଼ପାଟିରେ ଚିତ୍କାର କରିଉଠିଲା—"ସ୍ୱେର ! ସ୍ୱେର ! ଧାଇଁଆସ ।"

ଶାସାର ଚିତ୍କାରରେ ସେ ପିଲାଟି ଟିକେ ବିବ୍ରତ ହୋଇପଡ଼ିଲା । ସେ ଶାସାଠାରୁ ପ୍ରାୟ ଦୁଇବର୍ଷ ବଡ଼ ହେବ । ବଳରେ ମଧ୍ୟ ଅଧିକ । ସେ ତେଣୁ ଶାସାକୁ ଠେଲିଦେଇ ପଳାଇଯିବାକୁ ଚେଷ୍ଟା କଲା । ଶାସା ତା'ଠାରୁ ସାନ ହେଲେ ବି ସହଜରେ ଛାଡ଼ିବା ପିଲା ନୁହେଁ । ତେଣୁ ସେ ମଧ୍ୟ ତା' ସହିତ ଜୋକ ଭଳି ଲାଗିଥାଏ । ଏଇ ଝଗଡ଼ା ଭିତରେ ହଠାତ୍ ପିଲାଟି ଶାସାକୁ ତଳେ ପକାଇ ମାଡ଼ିବସିଲା ।

ଠିକ୍ ସେହି ସମୟରେ ବଗିଚାର ମାଳି ଆସି ପହଞ୍ଚିଗଲା ଓ ସେ ତାକୁ ଠେଲିଦେଇ ଶାସାକୁ ତଳୁ ଉଠାଇଲା । ମାଳି ଧମକାଇ କହିଲା—"ହେ ଦୁଷ୍ଟଟୋକା, ତୋର ତ ସାହସ କମ୍ ନୁହେଁ ? ତୁ ଆମ ଛୁଆବାବୁଙ୍କୁ ମାରିଲୁ ?"

ଶାସା ଏଥର ବିକଳ ହୋଇ କହିଲା—"ମୋ ମୁଦି ମୋତେ ଦେଇଦେ ।"

ମାଳି କହିଲା—ରୁହ ଛୁଆବାବୁ, ମୁଁ ତାକୁ ଗୁମାସ୍ତାବାବୁଙ୍କ ପାଖକୁ ନେଇଯିବି । ସେ ସେଠି ଭଲକରି ପାନେ ପାଇବ ।

ମାଳି ସେ ପିଲାକୁ ଘୋଷାରି ଘୋଷାରି ନେଇଯିବା ବେଳେ ବାଟରେ କର୍ଣ୍ଣଲ ପେଟ୍ରୋଭିଚ୍‌ଙ୍କୁ ଦେଖିଲା । ସେ ତାଙ୍କ ଘୋଡ଼ାଶାଳ ଦେଖିବା ପାଇଁ ଯାଉଥିଲେ । ସେ ପଚାରିଲେ—"କଣ ହୋଇଛି ?"

ମାଳି ଚୁମ୍ବକରେ ସବୁ କଥା ତାଙ୍କୁ ଜଣାଇଦେଲା । କର୍ଣ୍ଣଲ ପେଟ୍ରୋଭିଚ୍ ମନୋଯୋଗ ସହକାରେ ମାଳିର କଥା ଶୁଣିସାରି ଶାସାକୁ ପଚାରିଲେ—"ତୁ ତା' ସହିତ କାହିଁକି ମିଶୁଥିଲୁ ?"

ଶାସା ଡରିଡରି କହିଲା—"ମୁଁ ଗଛ କୋରଡ଼ରେ ମୁଦି ରଖିଥିଲି, ସେ ନେଇଗଲା । ପାପା ତାକୁ କୁହ ସେ ମୋତେ ମୋ ମୁଦି ଫେରାଇ-ଦେବ ।"

—"କି ମୁଦି ? ପୁଣି ଗଛ କୋରଡ଼ରେ ?"

—"ସେ ମୁଦି ମାଉଆର । ମୁଁ କଣ କହୁଥିଲି କି···"

ମୁଦି କଥା ଶୁଣି କର୍ଣ୍ଣଲ ପେଟ୍ରୋଭିଚ୍ ସ୍ତବ୍ଧିଗଲେ ଓ ଗମ୍ଭୀର କଣ୍ଠରେ ପଚାରିଲେ, "ମାଉଆ···ସେ ବି ତା'ହେଲେ ଏଥିରେ ଅଛି ? ସତ କଥା କ'ଣ କହ—ନହେଲେ ବାଡ଼େଇ ବାଡ଼େଇ ତୋତେ ମାରିଦେବି ।"

ଶାସା ଡରିଯାଇ କହିଲା—ପାପା, ପାପା, ମୁଁ ଶପଥ କରି କହୁଛି—ମାଉଆ ଏ ବିଷୟରେ ମୋତେ କିଛି କହିନଥିଲା ।

କର୍ଣ୍ଣଲ ଜଣେ ଚାକରକୁ କହିଲେ—"ଏ ଗଲୁ, ସେ କାମୁଡ଼ା କୁକୁରଟାକୁ ଆଣିବୁ ।"

ଏହା ଶୁଣି ଭୀତତ୍ରସ୍ତ ଶାସା କହିଲା—"ପାପା, ଅପେକ୍ଷାକର—ମୁଁ ସବୁ କଥା କହିବି । ମୁଁ ବଗିଚା ବାଟେ ଦୌଡ଼ିଆସୁଥିଲି । ଅପା ଝରକା ଖୋଲିଦେଲା । ମୁଁ ତା ପାଖକୁ ଦୌଡ଼ିଗଲି । ଦୈବାତ୍ ତା' ହାତରୁ

ମୁଦଟା ଝରକାର ବାହାରପଟକୁ ଗଳିପଡ଼ିଲା । ମୁଁ ସେଇଟାକୁ ଗୋଟେଇ ଆଣି ଗଛ କୋରଡ଼ରେ ରଖିଦେଲି । ଏଇ ସମୟରେ ସେହି କହିସମୁଣ୍ଡିଆ ପିଲା ସେ ମୁଦ ଚୋରିକରି ନେଇଯାଉଥିଲା ।’’

କାର୍ଲ ଏକଥା ବିଶ୍ୱାସ ନକରି କହିଲେ—‘‘ସେ ମୁଦ ପକାଇଦେଲା ଆଉ ତୁ ତାକୁ ନେଇ ଲୁଚାଇଦେଲୁ ? କାହିଁରେ, ଆଣିଲୁ ସେ କୁକୁରଟା !’’

‘‘ଗୋଟିଏ ମିନଟ୍ ଅପେକ୍ଷା କର ପାପା ! ମୁଁ ସବୁ କହୁଛି । ଅପା, ସେ ଗଛ କୋରଡ଼ରେ ମୁଦଟି ରଖିବାକୁ କହିଥିଲା । ମୁଁ ରଖି ଫେରିଆସିବା ବେଳକୁ ଏଇ ଦୁଷ୍ଟ ଟୋକାଟା ଦୌଡ଼ିଆସିଲା ।’’

କାର୍ଲ ସେ ଅଚିହ୍ନା ପିଲାକୁ ଧମକାଇ ପଚାରିଲେ—‘ତୁ କାହା ପୁଅ ?’

ପିଲାଟି କହିଲା—‘‘ମୁଁ ଡୁବ୍ରୋଭସ୍କିଙ୍କ ଚାକର ପିଲା ।’’

ଏ କଥା ଶୁଣି କାର୍ଲ ପେଟ୍ରୋଭିଚ୍‌ଙ୍କର ମୁହଁରେ ସତରେ ଯେପରି ଅନ୍ଧାର ଘୋଟିଗଲା । ସେ ଅତି କ୍ରୋଧରେ କହିଲେ—‘‘ତୁ ମୋତେ ତୋ’ ମୁନିବ ବୋଲି ଏପର୍ଯ୍ୟନ୍ତ ମାନିନାହୁଁ ! ହଉ—ଭଲ କଥା । ଆଚ୍ଛା ତୁ ଏଠି କ’ଣ କରୁଥିଲୁ ?’’

ପିଲାଟି ତାଙ୍କୁ ସନ୍ତୁଷ୍ଟ କରିବାକୁ ଖୁବ୍ ଧୀର ନମ୍ର ସ୍ୱରରେ କହିଲା—‘ମୁଁ କୋଳି ତୋଳୁଥିଲି ।’

କାର୍ଲ କ୍ରୋଧରେ କହିଲା—‘‘ହଁ ମାଲିକ ଯେମିତି ଚାକର ସେମିତି । ସେ କୋଳି କ’ଣ ଓକ୍ ଗଛରୁ ତୋଳୁଥିଲୁ ? ମୋ ରାଜ୍ୟର ଓକ୍ ଗଛରେ କ’ଣ ସେ କୋଳି ଫଳେ ?’’ ପିଲାଟି କିଛି କହିଲା ନାହିଁ—ନୀରବ ରହିଲା ।

ଶାସା ଏତିକିବେଳେ କହିଲା—ପାପା, ତାକୁ କୁହ ମୋ ମୁଦଟା ଦେଉ ।

କାର୍ଲ—‘‘ଚୁପ୍ ରହ । ମୁଁ ତୋ ଉପରେ ଖୁବ୍ ରାଗିଛି ବୋଲି ଭୁଲି ଯାଆନା । ଘରକୁ ଚାଲ ।’’ ତା’ପରେ ସେ ପିଲାଟିକୁ କହିଲେ, ‘‘ତୁ ତ ଗୋଟିଏ ଭଲପିଲା ପରି ଜଣାପଡୁଛୁ । ମୋତେ ସେ ମୁଦଟି ଦେଇ ଚାଲିଯା ।’’

ପିଲାଟି ହାତ ଖୋଲି ଦେଖାଇ କହିଲା—ହେଇ ଦେଖନ୍ତୁ, ମୋ ହାତରେ କିଛି ନାହିଁ ।

କର୍ତ୍ତା କହିଲେ—ଯଦି ତୁ ସତକଥା କହିଦେବୁ, ମୁଁ ତୋତେ ଗୋଟେ ରୁଟିଏ ଦେବି ଯେ ତୁ କୋଳି କରି ଖାଇବୁ । ଆଉ ଯଦି ସତକଥା ନ କହୁ, ତେବେ ମୁଁ ତୋର କ'ଣ କରିବି ତୁ ଭାବିପାରିବୁ ନାହିଁ ।

ପିଲାଟି କୌଣସି ଉତ୍ତର ନ ଦେଇ ମୁଣ୍ଡ ତଳକୁ କରି ବୋକାଙ୍କ ଭଳି ଠିଆ ହୋଇ ରହିଲା । କର୍ତ୍ତା ଏହା ଦେଖି ମାଳୀକୁ କହିଲେ—ଏହା କଥା ପରେ ବୁଝିବି—ଏବେ ଏହାକୁ ନେଇ ଘରେ ବନ୍ଦକରି ରଖ—ସେ ଯେପରି ବାହାରକୁ ପଳାଇ ନ ଯାଏ । ଇଂଅନ୍ଧାରେ ଗ୍ରୁଲ ହତାଶ ଦେଉଛି, ରହ ।"

ମାଲିକର ଆଦେଶରେ ମାଳୀ ତାକୁ ନେଇ ଗୋଟେ ଛୋଟିଆ ଘରେ ତାଲା ପକାଇ ରଖିଦେଲା ଓ କୁକୁଡ଼ା ଘର ଦାୟିତ୍ୱରେ ଥିବା ଜଣେ ସ୍ତ୍ରୀ ଲୋକକୁ ଜଗାଇଦେଇଗଲା ।

କର୍ତ୍ତା ମାଳୀକୁ କହିଲେ—ମୁଁ ଏହା ଉପରେ ଆଖି ରଖିଛି । ତୁ ଶୀଘ୍ର ସହରକୁ ଯା—ମୁଁ ଡାକୁଛି କହି କ୍ୟାପ୍‌ଟେନ୍‌ଙ୍କୁ ଡାକିଆଣିବୁ ।

କର୍ଲ ଭାବିଲେ ଯେ ଡ୍ରୁବ୍ରୋଇର୍ଷ୍ଟିକୁ ଏଥର ଧରିପାରିବେ । ସୁଯୋଗ ଫିଟିଯିବ । ଏ ପରିସ୍ଥିତିରେ ଡେରିକରିବା ଉଚିତ ନୁହେଁ । ସମସ୍ତଙ୍କୁ ସତର୍କ କରାଇବା କ୍ରମ ସେ ବଜାଇଦେଲେ । ଏହା ଏକ ସୁବର୍ଣ୍ଣ ସୁଯୋଗ । ଏ ସମୟରେ ପୁଲିସର ହୁଇସିଲ୍ ଶୁଣାଗଲା । ସେ ଭାବିଲେ—ହୁଇସିଲ୍ ତ ଶୁଭିଲାଣି—ପୋଲିସ କ୍ୟାପଟେନ୍ ଆସିଗଲେଣି । ସେ ପିଲାକୁ ଏଠାକୁ ଧରିଆଣ ।

କ୍ୟାପଟେନ୍ ସଦଳବଳେ ପହଞ୍ଚିଗଲେ । କର୍ଲଙ୍କୁ ଅଭିବାଦନ କରି କହିଲେ—"ବଗିଚାରୁ ଗୋଟିଏ ପିଲା ଧରାପଡ଼ିବା ଖବର ଶୁଣି ଆମେ ଧାଇଁଆସିଛୁ ।"

କର୍ଲ ଆନନ୍ଦରେ କହିଲେ—"ସୁସମ୍ବାଦ । ମୁଁ ଡ୍ରୁବ୍ରୋଇର୍ଷ୍ଟିକୁ ଧରିଛି ।"

କ୍ୟାପେଟନ—ଆପଣଙ୍କର ମଙ୍ଗଳ ହେଉ । କାହିଁ ସେ ? କର୍ତ୍ତା—

:"ସେ ଡୁବ୍ରୋଭସ୍କି ନହୋଇପାରେ । ଅନ୍ତତଃ ତାଙ୍କୁ ଧରାଇଦେବାରେ ସାହାଯ୍ୟ କରିବ । ହେଇଟି, ସେ ଆସିଲାଣି ।"

ପୋଲିସ କ୍ୟାପ୍‌ଟେନ୍ ଜଣେ ଖରାପ ଚରିତ୍ରର ଲୋକଙ୍କୁ ଦେଖିବେ ବୋଲି ଆଶାକରିଥିଲେ । କିନ୍ତୁ ତେରବର୍ଷର ଏକ ଦରିଦ୍ର ପିଲାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ କର୍ଣ୍ଣେଲ ପେଟ୍ରୋଭିଚ୍‌ଙ୍କୁ ଚାହିଁଲେ । କ୍ୟାପଟେନ୍‌ଙ୍କ ମନ-କଥା ବୁଝିପାରି କର୍ଣ୍ଣେଲ ପେଟ୍ରୋଭିଚ୍ ମାରିଆ ବିଷୟ ଛାଡ଼ି ଅନ୍ୟ ଘଟଣାଟି କହିଦେଲେ ।

ସେ ପର୍ଯ୍ୟନ୍ତ ପିଲାଟି ତା' ଘରପାଖରେ କ'ଣ ହୋଇଛୁ, ସେ କଥା ଜାଣିବାକୁ ଆଗ୍ରହ ନକରି ବୋକାଙ୍କ ପରି ସେମିତ ଚାହିଁରହିଥାଏ । ପୋଲିସ କ୍ୟାପଟେନ୍ ସବୁ ଶୁଣିଲା ପରେ ପିଲାଟି ସହିତ ନିରୋଳାରେ କଥା ହେବାକୁ ଚାହିଁଲେ । କିନ୍ତୁ କର୍ଣ୍ଣେଲ ପେଟ୍ରୋଭିଚ୍ ପୋଲିସ କ୍ୟାପଟେନ୍‌ଙ୍କୁ ତାଙ୍କ ଷ୍ଟଡିରୁମ୍‌କୁ ନେଇ ଦରଜା ବନ୍ଦକରିଦେଲେ ଓ ପ୍ରାୟ ଅଧଘଣ୍ଟାଏ କଥାବାର୍ତ୍ତା ପରେ ସେମାନେ ବାହାରିଆସିଲେ ।

କ୍ୟାପଟେନ୍ କହିଲେ—ଭଲକଥା, ଏ ବଦ୍‌ମାସ୍‌କୁ ଟାଉନ୍ ଜେଲକୁ ପଠାଇଦିଅ ।

କର୍ଣ୍ଣେଲ କହିଲେ—ଏ ପିଲା ବନ୍ଦୀ ହେବାର ଯୋଗ୍ୟ ନୁହେଁ—ତାକୁ ଛାଡ଼ିଦିଅ ।

ତାପରେ ପିଲାକୁ କହିଲେ—ହଇ ଚାଲିଯା, ତୁ ଆଉ କେବେ ଚୋରି କରିବୁ ନାହିଁ । ଏହା ଶୁଣି ସେ ପିଲାଟି କର୍ଣ୍ଣେଲ ପେଟ୍ରୋଭିଚ୍‌ଙ୍କ ହାତରେ ଚୁମ୍ବନଟିଏ ଦେଇ ଚାଲିଗଲା ଖୁବ୍ ଖୁସିରେ ଡେଇଁ ଡେଇଁ । ଥରକ ପାଇଁ ବି ପଛକୁ ନ ଚାହିଁ । ଏକ ନିଃଶ୍ୱାସରେ ପଳାଇଗଲା । ସେ ଯାଇ ଗାଆଁର ଶେଷମୁଣ୍ଡରେ ଥିବା ଏକ ଭଙ୍ଗାକୁଡ଼ିଆ ଝରକା ପାଖରେ ଠିଆହୋଇ ଝରକା ବାଡ଼େଇ ଡାକିଲା ଓ ପରେ ପରେ ଜଣେ ବୁଢ଼ା କବାଟ ମେଲି କରିଦେଲେ ।

ପିଲାଟି କହିଲା—ଗ୍ରାନ, ମୁଁ ସକାଳୁ ଏ ପର୍ଯ୍ୟନ୍ତ କିଛି ଖାଇନାହିଁ । ଭାରି ଭୋକ ଲାଗିଲାଣି ।

ବୁଢା କହିଲା—ବଡ ଦୁଷ୍ଟ ତୁ ! କୁଆଡେ ଏତେବେଳଯାଏ ଯାଇଥିଲୁ ? ପିଲାଟି କହିଲା—"ପରେ ସବୁକଥା କହିବି ।" ସ୍ତାନ ତାକୁ ଝରକାବାଟେ କିଛି ରୁଟି ବଢ଼ାଇଦେଲେ । ପିଲାଟି ଖୁବ୍ କାର୍ଯ୍ୟବ୍ୟସ୍ତ ପରି ଅତି ଶୀଘ୍ର ସେଠାରୁ ଜଙ୍ଗଲ ଅଭିମୁଖେ ଚାଲିଗଲା । ଜଙ୍ଗଲ ଭିତରେ ପଶି ଦୁଇଟି ପାଇନ୍ ଗଛ ମଝିରେ ଠିଆହୋଇ ଧୀରେ ହୁଇସିଲ୍ ବଜାଇଲା, ପରେ ପରେ ତଦନୁରୂପ ହୁଇସିଲରୁ ଶବ୍ଦ ମଧ୍ୟ ଶୁଭିଥିଲା ।

# ଅଷ୍ଟାଦଶ ଅଧ୍ୟାୟ

କର୍ଣ୍ଣଲ ପେଟ୍ରୋଭିଚ୍ ଚୁପ୍ ଚୁପ୍ ମଜାରେ ହୁଇସିଲ୍ ବଜାଇଲେ । ଗୃହର ପ୍ରତ୍ୟେକ ବ୍ୟକ୍ତି ଓ ଘୋଡ଼ାଗାଡ଼ିର ଚାଳକମାନେ ବଗିଚାରେ ଆସି ଜୁଣ୍ଡହୋଇଗଲେ ।

'ଶୀଘ୍ର ପ୍ରସ୍ତୁତ ହୁଅ'—କର୍ଣ୍ଣଲ ପେଟ୍ରୋଭିଚ୍ ପରିଚାରିକାକୁ କହିଲେ ।

ପରିଚାରିକା ମାଋଆକୁ କହିଲା, "ଝିଅ, ଏଥିରେ ତୁମ ମନ ଖୁସି ତ ?"

ମାଋଆ କର୍ଣ୍ଣେଭନା ଉଠି ଠିଆହେଲା । ଦରଜା ଖୋଲିଗଲା । "ବର ପ୍ରସ୍ତୁତ ଅଛନ୍ତି । ଆମେ ଶୀଘ୍ର ଯିବା ।" ପରିଚାରିକା କହିଲା ।

କର୍ଣ୍ଣଲ ପେଟ୍ରୋଭିଚ୍ କହିଲେ, "ମାଋଆ ଏଠାକୁ ଟିକିଏ ଆସେ । ମୁଁ ତୋତେ ଆଶୀର୍ବାଦ କରିବି ।"

ନିଜକୁ ଅତି ଅସହାୟ ମନେକରୁଥିବା ମାଋଆ କାନ୍ଦି କାନ୍ଦି ତା ବାପାଙ୍କ ଗୋଡ଼ତଳେ ପଡ଼ିଯାଇ କହିଲା,—"ପାପା···ପାପା···" ତା' ପରେ ତାର କଣ୍ଠ ରୋଧ ହୋଇଯାଇଥିଲା ।

କର୍ଣ୍ଣଲ ପେଟ୍ରୋଭିଚ୍ ଝିଅକୁ ଶୀଘ୍ର ଆଶୀର୍ବାଦ କରି ସେଠାରୁ ଚାଲିଗଲେ । ଏଥର ମାଋଆକୁ ଘୋଡ଼ାଗାଡ଼ି ପାଖକୁ ନିଆଗଲା । ଘରର ଜଣେ ପରିଚାରିକା ଯେ କି ପୁଅର ମା' ଭୂମିକା କରୁଥିଲେ, ସେ ମାଋଆ ପାଖରେ ବସିଲା । ଗାଡ଼ିଟି ଚର୍ଚ୍ଚ ଅଭିମୁଖେ ଆସେଇ ଚାଲିଲା । ସେଠାରେ

ଅନେକ ଆଗରୁ ଆସି ଅପେକ୍ଷା କରିଥିବା ବର ଗାଡ଼ି ପହଞ୍ଚିବା ମାତ୍ରକେ ଗାଡ଼ି ନିକଟକୁ ଧାଇଁଆସିଲେ ଓ କନ୍ୟାର ଅସ୍ୱାଭାବିକ ପରିପାଟୀ ଦେଖି ଆଶ୍ଚର୍ଯ୍ୟ ହେଲେ ଓ ସଙ୍କୁଚିତ ହୋଇଗଲେ ମଧ୍ୟ। ସେମାନେ ଆଡ଼ମ୍ବରଶୂନ୍ୟ ଭାବେ ଚର୍ଚ୍ଚ ଭିତରେ ପ୍ରବେଶ କରିବା ମାତ୍ରେ ଚର୍ଚ୍ଚର ଦରଜା ବନ୍ଦ ହୋଇଗଲା । ପୁରୋହିତ ତାଙ୍କ କାର୍ଯ୍ୟ ଶୀଘ୍ର ଶୀଘ୍ର ଆରମ୍ଭ କଲେ। ମାରିଆ କରିଲୋଭନା କିଛି ଦେଖିପାରୁନଥିଲା କି ଶୁଣି ପାରୁନଥିଲା— କେବଳ ଗୋଟିଏ କଥା ଭାବୁଥିଲା। ସେ ସକାଳ ପର୍ଯ୍ୟନ୍ତ ଡୁବ୍ରୋଭସ୍କିକୁ ଅପେକ୍ଷା କରିଥିଲା। ମୁହୂର୍ତ୍ତିକ ପାଇଁ ହେଲେ ସୁଦ୍ଧା ତା' ଅନ୍ତର ଭିତରେ ହତାଶାଭାବ ଦେଖାଯାଇଥିଲା । ପୁରୋହିତ ସାଧାରଣ ଭାବେ ତାକୁ କେତୋଟି ପ୍ରଶ୍ନ ପଚାରିଲେ। ସେ କିନ୍ତୁ ଡୁବ୍ରୋଭସ୍କିର ଚିନ୍ତାରେ ବୁଡ଼ି-ରହି ଥିବାରୁ ପ୍ରଶ୍ନର ଉତ୍ତର ଦେବାରେ ଡେରିକରୁଥିଲା। ତେଣୁ ପୁରୋହିତ ନିଜେ ନିଜେ ଶୀଘ୍ର ସେଗୁଡ଼ିକ କହିଦେଲେ।

ବିବାହ ଉତ୍ସବ ସରିଲା। ମାରିଆ ଭଲପାଉନଥିବା ସେଇ ଲୋକଟିର ଶୀତଳ ଚୁମ୍ବନ ଅନୁଭବକଲା। ତାକୁ ଘେରିରହିଥିବା ଲୋକଙ୍କର ଆନନ୍ଦ ଧ୍ୱନି ଶୁଣିଲା। ସେ ପର୍ଯ୍ୟନ୍ତ ସୁଦ୍ଧା ସେ ସାଧାରଣ ଓ ସ୍ୱାଭାବିକ ଅବସ୍ଥାକୁ ଆସିନଥିଲା। ଡୁବ୍ରୋଭସ୍କି ଯେ ତାକୁ ରକ୍ଷାକରିବାକୁ ଆସିଲା ନାହିଁ, ଏଇ ଭାବନାରେ ମନ ତାର ବିଷଣ୍ଣ।

ରାଜକୁମାର ଭେରେସ୍କି ସ୍ନେହରେ ତାକୁ କଥା କହିବାକୁ ଆରମ୍ଭ କଲେ। ମାରିଆ କିନ୍ତୁ କିଛି ବୁଝିପାରିଲା ନାହିଁ । ସେଠାରେ ଉପସ୍ଥିତ ଥିବା ତା' ଗାଁର ଗ୍ରାମବାସୀମାନେ ଚର୍ଚ୍ଚ ବାହାରକୁ ଚାଲିଗଲେ ଏବଂ ଗାଡ଼ି ପାଖରେ ଗାଡ଼ିକୁ ଘେରି ଠିଆହୋଇରହିଲେ । ବିସ୍ମିତ ଭଳି ସେ କେବଳ ସେମାନଙ୍କୁ ଚାହିଁଥାଏ।

ତାପରେ ମାରିଆର ନବବିବାହିତ ସ୍ୱାମୀ ତା' ନିକଟରେ ଗାଡ଼ିରେ ବସିଯାଇ ଗାଡ଼ି ଚଳାଇବାକୁ ଆଦେଶଦେଲେ । ଗାଡ଼ିରେ ଦ୍ରୁତଗାମୀ ଘୋଡ଼ା ବନ୍ଧାଯାଇଥିଲା । ଆଦେଶ ପାଇବା ମାତ୍ରେ ଗାଡ଼ି ଗ୍ରାମ୍ୟ ରାସ୍ତା ଦେଇ ଆଗେଇଚାଲିଲା। ହଠାତ୍ ସମ୍ମୁଖରେ ଏକ ଗାଡ଼ି ଦେଖି ଭେରେସ୍କିଙ୍କ

ଗାଡ଼ି ଅଟକିଗଲା । ସାମନା ଗାଡ଼ିରୁ ଜଣେ ଯୁବକ ଓହ୍ଲାଇ ଆସିଲେ । ସେ ମାଉଆଙ୍କୁ କହିଲେ—"ତୁମେ ଏବେ ମୁକ୍ତ । ଗାଡ଼ିରୁ ବାହାରିକି ଚାଲିଆସ ।"

—"ଏ କ'ଣ ? ତୁମେ କିଏ ?" ରାଜକୁମାର ଚିତ୍କାର କରିଉଠିଲେ ।

ଏତେବେଳକେ ମାଉଆ ପାଟି ଖୋଲି କହିଲା—"ସେ ଡୁବ୍ରୋଭସ୍କି ।" ଏହା ଶୁଣି ରାଜକୁମାର ଧୈର୍ଯ୍ୟହରା ନ ହୋଇ ତାଙ୍କ ଭ୍ରମଣ ସଙ୍ଗୀ ପିସ୍ତଲଟି ପକେଟରୁ ବାହାରକଲେ ଏବଂ ଯୁବକ ଉପରକୁ ଗୁଳିକଲେ । ଏହା ଦେଖି ମାଉସୀ ଭୟରେ ଚିତ୍କାର କରି ମୁହଁରେ ହାତ ଘୋଡ଼ାଇ ଦେଲି । ପିସ୍ତଲ ଗୁଳିରେ ଡୁବ୍ରୋଭସ୍କିର କାନ୍ଧରେ ଆଘାତ ଲାଗିଲା ଓ ସେଠାରୁ ରକ୍ତର ଧାର ଅବାରିତ ଗତିରେ ଝରିପଡ଼ିଲି । ରାଜକୁମାର କିଛି ବି ସମୟ ନଷ୍ଟ ନକରି ଦ୍ୱିତୀୟ ପିସ୍ତଲ ବାହାରକଲେ ପୁଣି ଗୁଳି କରିବାକୁ । କିନ୍ତୁ ତା ପୂର୍ବରୁ ଯୁବକର ଶକ୍ତିଶାଳୀ ହାତ ଦୁଇଟି ତାଙ୍କ ହାତରୁ ପିସ୍ତଲ ଛଡ଼ାଇନେଲି ଓ ତାଙ୍କ ମୁଣ୍ଡରେ ଆଘାତକଲି ।

"ତାଙ୍କୁ ଛୁଇଁବ ନାହିଁ ।" ଡୁବ୍ରୋଭସ୍କି ତାଙ୍କ ଦଳର ଲୋକଙ୍କୁ କହିଲେ । ଦୁଃଖିତା ମାଉଆକୁ ଚାହିଁ ସେ କହିଲେ, "ମାଉଆ ତୁମେ ବର୍ତ୍ତମାନ ମୁକ୍ତ ।"

ମାଉଆ ଦୁଃଖରେ କହିଲା, "ନାଁ, ବହୁତ ଡେରି ହୋଇଗଲା ! ମୁଁ ଏବେ ବିବାହିତା--ଏବେ ରାଜକୁମାର ଭେରେସ୍କିଙ୍କର ପତ୍ନୀ ।"

ଏହା ଶୁଣି ଡୁବ୍ରୋଭସ୍କି ଦୁଃଖରେ କହିଲି, "ତୁମେ ଏ କ'ଣ କହୁଛ ? ନାଁ, ତୁମେ ତାଙ୍କର ସ୍ତ୍ରୀ ନୁହେଁ । ତୁମକୁ ଜୋର୍ କରି ବିବାହ କରା-ଯାଇଛି । ଆଚ୍ଛା, ତୁମେ କିଣ ମୋ ପାଖକୁ ସଙ୍କେତ ଦେଇନଥିଲ ?"

"ମୁଁ ସଙ୍କେତ ଦେଇଥିଲି, ମୁଁ ଶପଥ କରିଥିଲି ।" ମାଉଆ ଦୃଢ଼ ସ୍ୱରରେ କହିଲି—"ସେ ରାଜକୁମାର ଏବେ ମୋର ସ୍ୱାମୀ । ସେମାନଙ୍କୁ କୁହ ତାଙ୍କୁ ଛାଡ଼ିଦିଅନ୍ତୁ ଏବଂ ମୋତେ ବି ତାଙ୍କ ସହିତ ଛାଡ଼ିଦିଅ । ମୁଁ ତୁମକୁ ତ୍ୟାଗ କରିନାହିଁ । ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ଅପେକ୍ଷା କଲି । ବର୍ତ୍ତମାନ ବହୁତ ଡେରି ହୋଇଗଲାଣି । ମୁଁ ତୁମକୁ କହୁଛି—ଆମ ବାଟରେ ଯିବାକୁ ଆମକୁ ଛାଡ଼ିଦିଅ ।"

ଡୁବ୍ରୋଭସ୍କି ଆଉ କିଛି ଶୁଣିପାରୁନଥିଲା । ତା ଶରୀରର ଯନ୍ତ୍ରଣା ଅପେକ୍ଷା ହୃଦୟର ଯନ୍ତ୍ରଣା ତାର ସମସ୍ତ ଶକ୍ତିକୁ ନିଃଶେଷ କରିଦେଲା । ପରେ ପରେ ସେ ଗାଡ଼ି ପାଖରେ କଣ୍ଟୁଡ଼ିହୋଇପଡ଼ିଗଲା । ବହୁ କଷ୍ଟରେ ସେ ମାତ୍ର କେତେପଦ କଥା ତାର ସହକର୍ମୀମାନଙ୍କୁ କହିଲା— "ଗାଡ଼ିରେ ତାଙ୍କୁ ନେଇ ଠିକ୍ ରାସ୍ତାରେ ଛାଡ଼ିଦେଇ ଆସ ।" ଡୁବ୍ରୋଭସ୍କି ପାଖରେ ଦୁଇଜଣ ସହକର୍ମୀ ରହିଲେ । ଅନ୍ୟ ଜଣକ ନବଦମ୍ପତିଙ୍କ ସାଥିରେ ଯାଇ ସେମାନଙ୍କୁ ମୁଖ୍ୟ ରାସ୍ତାରେ ଛାଡ଼ିଦେଇ ଆସିଲେ । ନବଦମ୍ପତିଙ୍କର ସାମାନ୍ୟତମ ଅସୁବିଧା ହୋଇନଥିଲା ।

## ଊନବିଂଶ ଅଧ୍ୟାୟ

ଘଞ୍ଚ ଜଙ୍ଗଲ ଭିତରେ ଏକ ସଙ୍କୀର୍ଣ୍ଣ ସ୍ଥାନ । ସେଠି ମାଟି ଖାମ ସ୍ତୂପଥିଲା । ଖୁବ୍ ପାଖରେ ମାଟିକୁଦଟିଏ ମଧ୍ୟ ଥିଲା । ତାର ପାଖରେ ନାଳଟିଏ ବି ଥିଲା । ତାର ପଛକୁ ଗୁଡ଼ିଏ ଅଖାବସ୍ତା ଓ ଏକ ଗାଡ଼ି ଥିଲା ।

ସେହି ଅଖାବସ୍ତା ଆଗରେ ଦଳେ ଲୋକ ବସିଥିଲେ । ସେମାନଙ୍କର ଅପରିଷ୍କାର ବେଶଭୂଷା ଓ ହାତରେ ଧରିଥିବା ଅସ୍ତ୍ରଶସ୍ତ୍ର ଦେଖିଲେ ଯେ କେହି ସେମାନଙ୍କୁ ଡକାୟତ କହିବ । ଗୋଟିଏ କଡ଼ା ସ୍ତୂପପଟେ କେତେଜଣ ଲୋକ ବସି ଖାଉଥିଲେ । ଜଣେ ଜଗୁଆଳି ନାଳ ପାଖରେ ବସିଥିଲା । ତା'ପାଖରେ ଗୋଟାଏ ତୋପ ଥିଲା । ସେ ବସି ବସି ତା ଫଟାପୋଷାକରେ ତାଳିପକାଉଥିଲା । ସିଲାଇ କରିବା ଭିତରେ ବି ସେ ସବୁଆଡ଼କୁ ସତର୍କ ଦୃଷ୍ଟି ରଖିଥିଲା ।

ଏତେଗୁଡ଼ିଏ ଲୋକ ସେଠି ଥିଲେ ବି ପାଟି ଟିକେ ଶୁଭୁନଥିଲା । ମଧ୍ୟାହ୍ନ ଭୋଜନ ସରିଲା । ସେମାନଙ୍କ ଭିତରୁ କେତେକ ଲୋକ ଜମାହୋଇଥିବା ଅଖାବସ୍ତା ପାଖକୁ ଓ ଆଉ କେତେକ ଜଙ୍ଗଲ ଭିତରକୁ ଗଲେ । ଅବଶିଷ୍ଟ ଲୋକ ବିଶ୍ରାମ ନେବାକୁ ସେଠାରେ ଟିକେ ଶୋଇପଡ଼ିଲେ ।

ଜଗୁଆଳଟି ତାର ସିଳାଇ କାମ ସାରିଦେଇ ତୋପ ନିକଟକୁ ଗଲା ଏବଂ ବଡ଼ପାଟିରେ ଦୁଃଖାନ୍ତକ ଗୀତଟିଏ ଗାଇଲା ।

ଗୀତ ଶୁଣି ଜଣେ ବୃଦ୍ଧା ବାହାରକୁ ବାହାରିଆସି କହିଲେ—"ବନ୍ଦ କର ! ତୁମ ଦଳପତିର ଦୁଃଖରେ ତୁମେ ଗୀତଗାଇବାକୁ ଲଜ୍ଜାବୋଧ କରୁନାହଁ କି ମନରେ ଦୟା ମଧ୍ୟ ଆସୁନାହିଁ ?"

ଲୋକଟି କହିଲା—"ମୋତେ କ୍ଷମା କର, ମୁଁ ଗୀତ ବନ୍ଦକଲି । ସେ ବିଶ୍ରାମ ନିଅନ୍ତୁ ଓ ଶୀଘ୍ର ଆରୋଗ୍ୟ ଲାଭ କରନ୍ତୁ ।" ପ୍ରହରୀଟି ତାପରେ ନାଳର କୂଳେ କୂଳେ ଉପରତଳ ହୋଇ ତା'ର କର୍ତ୍ତବ୍ୟ କଲା ।

ଯେଉଁ ପଥ ଦେଇ ସେ ବୃଦ୍ଧା ପଦାକୁ ଆସିଥିଲେ, ସେହିଠାରେ ହିଁ ଡୁବ୍ରୋଭସ୍କି ଶୋଇଥିଲା । ତା' ନିକଟରେ ଟେବୁଲ ପାଖରେ ପିସ୍ତଲଟିଏ ଥିଲା । ମୁଣ୍ଡ ଉପରକୁ ଏକ ଖଣ୍ଡା ଟଙ୍ଗାଯାଇଥିଲା । ଘରେ ଏକ ସୁନ୍ଦର ଗାଲିଚା ପଡ଼ିଥିଲା । ଘରର ଗୋଟିଏ କୋଣରେ ବୃଦ୍ଧାଙ୍କର ସମସ୍ତ ଜିନିଷ ରଖାଯାଇଥିଲା । ଡୁବ୍ରୋଭସ୍କି ବହି ଖଣ୍ଡିଏ ଆଣି ପଢ଼ିବାକୁ ଆରମ୍ଭ କଲା ଏବଂ ପରେ ପରେ ଶୋଇପଡ଼ିଲା । ବୃଦ୍ଧା ତାର ପାଖରେ ରହି ତାକୁ ଜଗିଥିଲେ ।

ଏହି ସମୟରେ ବାହାରେ ସତର୍କ ଘଣ୍ଟି ଶୁଣି ସମସ୍ତେ ପ୍ରସ୍ତୁତ ହୋଇଗଲେ । ପ୍ରହରୀଟି ପାଟିକରି କହିଲା—"ହେ ମୁନିବ ଡୁବ୍ରୋଭସ୍କି, ଏହା ଆମ ଦଳର ସଙ୍କେତ । ଶତ୍ରୁମାନେ ଆମକୁ ଖୋଜୁଛନ୍ତି ।"

ଏହା ଶୁଣି ଡୁବ୍ରୋଭସ୍କି ବିଛଣାରୁ ଉଠିପଡ଼ି ଓ ଅସ୍ତ୍ରଶସ୍ତ୍ର ନେଇ ପଦାକୁ ବାହାରିଗଲା । ତାକୁ ଦେଖି ସମସ୍ତେ ନୀରବ ହୋଇଗଲେ । ଡୁବ୍ରୋଭସ୍କି ଆଦେଶ ଦେଇ କହିଲା—"ସମସ୍ତେ ଏଠାରେ ଅଛନ୍ତି ତ ? ନିଜନିଜର ସ୍ଥାନକୁ ଚାଲିଯିବାକୁ ସେମାନଙ୍କୁ କୁହ ।"

ସେହି ସମୟରେ ତିନିଜଣ ଲୋକ ଡୁବ୍ରୋଭସ୍କି ନିକଟକୁ ଦୌଡ଼ିଆସିଲେ । ସେମାନେ ବ୍ୟସ୍ତ ହୋଇ କହିଲେ, "ଜଙ୍ଗଲରେ ସୈନ୍ୟବାହିନୀ ପଶିଛନ୍ତି । ଆମେ ସମସ୍ତେ ଏବେ ତାଙ୍କ ଘେରରେ ।"

ଫାଟକ ବନ୍ଦ କରିବା ପାଇଁ ଡୁବ୍ରୋଭସ୍କି ଆଦେଶ ଦେଲା ଓ ନିଜେ

ତୋପ ଉପରେ ନଜର ରଖିଲା । ସେ ଓ ତାର ଲୋକମାନେ ନୀରବ ହୋଇଗଲେ । ଏହି ସମୟରେ ସୈନ୍ୟମାନେ ନିଜ ଦଳର ଲୋକମାନଙ୍କୁ ସତର୍କ କରାଇଦେବା ପାଇଁ ସଙ୍କେତ ଦେଲେ । ଏହା ଦେଖି ଡୁବ୍ରୋଭସ୍କି କହିଲା—"ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଯାଅ ।"

କ୍ରମେ ସୈନ୍ୟମାନଙ୍କ ଶବ୍ଦ ନିକଟରୁ ନିକଟତର ହେଲା । ସେମାନେ ନାଳ ପାଖରେ ଏକାଠି ହୋଇ ଉଚ୍ଚସ୍ୱରରେ କଥାବାର୍ତ୍ତା ହେଲେ । ଡୁବ୍ରୋଭସ୍କି ସେ ଆଡ଼କୁ ଲକ୍ଷ୍ୟକରି ତୋପ ଫୁଟାଇଲା । ଏଥିରେ ଜଣେ ସୈନ୍ୟ ମଲା ଓ ଦୁଇଜଣ ଆହତ ହେଲେ । ଅଫିସରମାନେ ଆଗକୁ ମାଡ଼ିଆସିଲେ । ସେମାନଙ୍କ ପଛେ ପଛେ ଅନ୍ୟ ସୈନ୍ୟମାନେ ଆଗେଇଆସିଲେ । ଡୁବ୍ରୋଭସ୍କି ସେମାନଙ୍କ ଉପରକୁ ଗୁଳିଚଳାଇଲା ଏବଂ ଅନ୍ୟମାନେ ଟାଙ୍ଗିଆ ଫାର୍ଶୋଧରି ନାଳ ପାଖରେ ଜଗିରହିଲେ । ସେମାନଙ୍କ ପଛରେ କୋଡ଼ିଏ ଜଣ କ୍ଷତବିକ୍ଷତ କମ୍ରେଡ଼ ଠିଆହୋଇ ରହିଲେ । ଏଥର ମୁହାଁମୁହିଁ ଯୁଦ୍ଧ ଚାଲିଲା । ଡୁବ୍ରୋଭସ୍କି ଅଫିସରମାନଙ୍କ ଉପରକୁ ଗୁଳି ଚଳାଇଲା । ଏହି ଆକ୍ରମଣରେ ଭୀତ ହୋଇ ସୈନ୍ୟମାନେ ପ୍ରାଣଭୟରେ ଜଙ୍ଗଲରେ ଲୁଚିଲେ । ଡୁବ୍ରୋଭସ୍କି ଏଇ ସଂକଟଜନକ ମୁହୂର୍ତ୍ତର ଉପଯୁକ୍ତ ବିନିଯୋଗ କଲା । ସେ ଗୁପ୍ତ ଭାବରେ ତାର ଲୋକମାନଙ୍କୁ ଜଣାଇଦେଲେ ଯେ ସେ କାହାରିକୁ ସୀମା ଭିତରେ ଛାଡ଼ି ଯିବ ନାହିଁ ।

ଦୁଃସାହସୀ ଡୁବ୍ରୋଭସ୍କିକୁ ମୃତ ବା ଜୀବିତ ଅବସ୍ଥାରେ ଧରିବାକୁ ସୈନ୍ୟମାନଙ୍କୁ ଆଦେଶ ଦିଆଗଲା । ଦୁଇଦିନ ଧରି ଭୀଷଣ ଯୁଦ୍ଧ ହେଲା । ପ୍ରତିଆକ୍ରମଣରେ ଡୁବ୍ରୋଭସ୍କି ଦଳର କେତେକଙ୍କୁ ଧରାଗଲା । ତାଙ୍କ କମ୍ରେଡମାନଙ୍କ ନିକଟରୁ ସୈନ୍ୟମାନେ ଶୁଣିବାକୁ ପାଇଲେ ଯେ ଡୁବ୍ରୋଭସ୍କି ତା' ଜୀବନଧାରା ପରିବର୍ତ୍ତନ ପାଇଁ ଦଳ ଛାଡ଼ି ସବୁଦିନ ପାଇଁ ଅନ୍ୟ କେଉଁ ସ୍ଥାନକୁ ଚାଲିଯାଇଛି ।

କିନ୍ତୁ ଯିବା ପୂର୍ବରୁ ସେ ତାର କମ୍ରେଡମାନଙ୍କୁ କହିଲା, "ତୁମ-ମାନଙ୍କର ସମସ୍ତ ଦଲିଲ ଓ ସମ୍ପତ୍ତି ତୁମ ପାଖରେ ଅଛି । ତେଣୁ ତୁମେ ସମସ୍ତେ ଦୂରସ୍ଥାନକୁ ଚାଲିଯିବ । ଏଭଳି କାର୍ଯ୍ୟ ଆଉ କେବେ କରିବ ନାହିଁ । ଚାଷ କରି ନିଜର ଜୀବିକା ନିର୍ବାହ କରିବ ।"

ଏଥର କିନ୍ତୁ ସେ ଦଳଛାଡ଼ି ଚାଲିଗଲା । କେବଳ ଏକମାତ୍ର ଜଣେ ଲୋକକୁ ତା' ସଙ୍ଗରେ ନେଇଗଲା । ତାର ଠିକଣା କେହି ଜାଣିପାରିଲେ ନାହିଁ । ଦୁର୍ଦ୍ଧର୍ଷ ଡକାୟତମାନଙ୍କର ସେହିଦିନଠାରୁ ଅବସାନ ଘଟିଲା । ଲୋକମାନେ ନିର୍ଭୟରେ ଯାତାୟାତ କଲେ ।

କେବଳ ଲୋକମୁଖରୁ ଶୁଣାଗଲା ଯେ ଡୁବ୍ରୋଭସ୍କି ଦେଶ ଛାଡ଼ି ଚାଲିଯାଇଥିଲା ।

